# କୁନ୍ତଳା କଥା ପ୍ରତିଭା

ଡକ୍ଟର ରଞ୍ଜିତା କୁମାରୀ ନାୟକ,
ଏମ୍.ଏ., ଏମ୍.ଫିଲ୍., ପି.ଏଚ୍.ଡି.



ଓଡ଼ିଶା ବୁକ୍ ଷ୍ଟୋର

# କୁନ୍ତଳା କଥା ପ୍ରତିଭା


ଲେଖିକା :

**ଡକ୍ଟର ରଞ୍ଜିତା କୁମାରୀ ନାୟକ**

ଅଧ୍ୟାପିକା, ଓଡ଼ିଆ ବିଭାଗ

ଇନ୍ଦିରାଗାନ୍ଧୀ ମହିଳା ମହାବିଦ୍ୟାଳୟ, କଟକ



ପ୍ରକାଶକ :

ଶ୍ରୀ ଗୋବିନ୍ଦ ଚରଣ ପାତ୍ର

**ଓଡ଼ିଶା ବୁକ୍ ଷ୍ଟୋର**

ବିନୋଦବିହାରୀ, କଟକ-୭୫୩୦୦୨

ପ୍ରଥମ ପ୍ରକାଶ : ଡିସେମ୍ବର, ୧୯୮୬

ମୁଦ୍ରାକର :

ଶ୍ରୀ ଚନ୍ଦ୍ରଶେଖର ପ୍ରଧାନ

**ରେଖା ପ୍ରେସ୍**

ବାର୍ମିସାହି, କଟକ-୭୫୩୦୦୯

ମୂଲ୍ୟ : ଟ ୧୫-୦୦ (ଶୋଭନ)

ସାଧାରଣ ଟ ୧୨-୦୦


KUNTALA KATHA PRATIVA


By :

Dr. RANJITA KUMARI NAYAK

Lecturer

Indira Gandhi Women's College

Cuttack.



Published by :

G. C. PATRA

Orissa Book Store

Binodbehari, Cuttack-753002

1st Edition—1986

Price : Rs. 15-00

# ଉତ୍ସର୍ଗ

ମୋର ପରମ ଆରାଧ୍ୟା

ଦେବୀ ଶାରଳାଙ୍କ

ପଦକମଳରେ

ରଂଜିତା

# ଦି'ପଦ

ଉଜ୍ଜ୍ୱଳ ଭାରତୀ କୁନ୍ତଳାକୁମାରୀ ଓଡ଼ିଆ ସାହିତ୍ୟର ଅମାରଜନୀରେ ଏକ ଉଜ୍ଜ୍ୱଳ ବର୍ତ୍ତିକା, ଏହା ସର୍ବଜନ ସ୍ୱୀକୃତ । ତାଙ୍କ ରଚିତ କବିତା ଓ ଉପନ୍ୟାସ ସମୂହ ବିଶ୍ୱବିଦ୍ୟାଳୟମାନଙ୍କର ଅନୁମୋଦନ କ୍ରମେ ପାଠ୍ୟ-କ୍ରମରେ ଅନ୍ତର୍ଭୁକ୍ତ । ମାତ୍ର ଗଭୀର ଅନୁତାପର ବିଷୟ ଯେ ଏହି ବରେଣ୍ୟା ଲେଖିକାଙ୍କର ସାହିତ୍ୟକୃତି ଉପରେ ଯେଉଁଭଳି ଆଲୋଚନା ହେବାକଥା ତାହା ହୋଇପାରି ନାହିଁ । ତେଣୁ ବିଶ୍ୱବିଦ୍ୟାଳୟ ଛାତ୍ରଛାତ୍ରୀମାନେ ଘୋର ଅସୁବିଧାର ସମ୍ମୁଖୀନ ହୋଇଥାନ୍ତି । ଏହି ଅଭାବକୁ ମୁଁ ମଧ୍ୟ ଅଙ୍ଗେ ଲିଭାଇଛି । ସୁତରାଂ ସେହି ଅଭାବମୋଚନ ନିମିତ୍ତ ମୁଁ ତାଙ୍କର ଉପନ୍ୟାସ-ଉପରେ ଆଲୋଚନା କରିବାକୁ କ୍ଷୁଦ୍ର ପ୍ରୟାସ କରିଛି । ପୁସ୍ତକଟି ପାଠକମାନଙ୍କ ଦ୍ୱାରା ଆଦୃତ ହେଲେ ମୋର ଶ୍ରମ କେତେକାଂଶରେ ସାର୍ଥକ ହେଲା ବୋଲି ବିଚାରିବି ।

ଉକ୍ତ ପୁସ୍ତକଟିର ରଚନା ଓ ପ୍ରକାଶନ ନିମିତ୍ତ ମୋର ସ୍ୱାମୀ ଶ୍ରୀ ପ୍ରଭାକର ସ୍ୱାଇଁଙ୍କ ସାହାଯ୍ୟ ଓ ସହଯୋଗ ଏହି ଅବକାଶରେ ଅବିସ୍ମରଣୀୟ ।

ଏହି ପ୍ରକାଶନ ଦାୟିତ୍ୱ ବିଶିଷ୍ଟ ପୁସ୍ତକ ପ୍ରକାଶନ ସଂସ୍ଥା 'ଓଡ଼ିଶା ବୁକ୍ ଷ୍ଟୋର୍'ର ସ୍ୱତ୍ୱାଧିକାରୀ ଶ୍ରୀ ଗୋବିନ୍ଦ ଚରଣ ପାତ୍ର ବହନ କରିଥିବାରୁ ତାଙ୍କ ନିକଟରେ ମୁଁ ଗଭୀର ଭାବେ କୃତଜ୍ଞା।

**ଲେଖିକା**

# ସୂଚୀ

# କୁନ୍ତଳାକୁମାରୀ ପରିଚିତି

ବଣର ମାଳତୀ ବଣରେ ଫୁଟି ଝଡ଼ିଯାଏ । କେହି ତା'ର ସୁରଭିକୁ ଉପଭୋଗ କରିପାରନ୍ତି ନାହିଁ । ମାତ୍ର ତାହା ଯଦି ଲୋକଲୋଚନକୁ ଆସେ ତେବେ ତା'ର ଜୀବନ ସାର୍ଥକ ହେବା ସଙ୍ଗେ ସଙ୍ଗେ ତା'ଦ୍ୱାରା ଦେବସ୍ଥଳୀ ମଧ୍ୟ ଆମୋଦିତ ହୁଏ । ଉତ୍କଳଭାରତୀ କୁନ୍ତଳାକୁମାରୀ ସେହିପରି ଏକ ସୁରଭିତ ପ୍ରତିଭା ।

୧୯୦୧ ଖ୍ରୀଷ୍ଟାବ୍ଦ ଫେବୃୟାରୀ ୮ ତାରିଖ ଶୁକ୍ରବାର ଦିନ କୁନ୍ତଳାକୁମାରୀ ବସ୍ତର ଷ୍ଟେଟର ଜଗଦଳପୁରଠାରେ ଏକ ଖ୍ରୀଷ୍ଟିୟାନ ପରିବାରରେ ଜନ୍ମଗ୍ରହଣ କରିଥିଲେ । ପିତା ଦାନିଏଲ ସାବତ ଜଣେ ବିଖ୍ୟାତ ଡାକ୍ତର ଥିଲେ । ମାତା ମନିକା ଦେବୀ ମିଷ୍ଟଭାଷିଣୀ ଓ ଗୃହକର୍ମରେ ନିପୁଣା ମହିଳା ଥିଲେ । ତୁଳସୀ ଦୁଇ ପତ୍ରରୁ ବାସିଲାପରି କୁନ୍ତଳାକୁମାରୀ ଯେ ଭବିଷ୍ୟତରେ ଜଣେ ବଡ଼ ମଣିଷ ହେବେ, ତାହା ତାଙ୍କ ଶୈଶବରୁ ଜଣା ପଡ଼ିଥିଲା । ପିଲାଦିନରୁ ସେ ଅତ୍ୟନ୍ତ ବୁଦ୍ଧିମତୀ ଓ ସାହସିନୀ ଥିଲେ । ତାଙ୍କ ଶୈଶବର କାର୍ଯ୍ୟକଳାପକୁ ଲକ୍ଷ୍ୟ କରି ପିତା ଦାନିଏଲ୍ ସାବତ୍ ମାତା ମନିକାଙ୍କୁ କହିଥିଲେ, "ଦେଖ ମନି ! ଏ ଜୀବଟି ଏକ ଆଶ୍ଚର୍ଯ୍ୟ ଇନସାନ୍ । ବହୁ ଭାଗ୍ୟ ଫଳରୁ ଆମେ ପାଇଛେ । ମାତ୍ର ତା' ନିକଟରେ ତୁମକୁ ସତର୍କରେ ଚଳିବାକୁ ପଡ଼ିବ ।" (ଚକ୍ରଧର ମହାପାତ୍ର—କୁନ୍ତଳା କୁମାରୀ ଜୀବନ ଚରିତ ପୃ—୧୯)।

ବାସ୍ତବିକ କୁନ୍ତଳାକୁମାରୀଙ୍କୁ ପାଇ ତାଙ୍କର ପିତାମାତା କେବଳ ଧନ୍ୟ ନୁହଁନ୍ତି, ସମଗ୍ର ଉତ୍କଳବାସୀ ଉତ୍କଳଭାରତୀଙ୍କୁ ପାଇ କୃତାର୍ଥ ହୋଇଛନ୍ତି । କୁନ୍ତଳା କୁମାରୀଙ୍କ ପିତା ଉଚ୍ଚ ଦରମା ହାରରେ ସୁଦୂର ବର୍ମାରେ ଚାକିରୀ କରୁଥିଲେ । ସୁତରାଂ ତାଙ୍କର ଶୈଶବ ଓ କୈଶୋରର୍ଷ ବର୍ମାରେ ଅତିବାହିତ ହୋଇଥିଲା । ଓଡ଼ିଶାଠାରୁ ବହୁ ଦୂରରେ ଥିବାରୁ ଓଡ଼ିଆ ଭାଷା ସହିତ ତାଙ୍କର ସମ୍ୟକ ପରିଚୟ ନଥିଲା । ହିନ୍ଦୀହିଁ ତାଙ୍କର ମୁଖ୍ୟ ଭାଷା ଥିଲା । କୁନ୍ତଳାକୁମାରୀଙ୍କ ସାନଭଉଣୀ ପ୍ରଫୁଲ୍ଲକୁମାରୀଙ୍କ ଏକ ଲେଖରୁ ଏହାର ସତ୍ୟତା ଉପଲବ୍ଧ କରାଯାଇ ପାରେ—

—"ବ୍ରହ୍ମଦେଶରେ ଆମେ ଓଡ଼ିଆକୁ ପରଭାଷା ରୂପେ ଶିକ୍ଷା କରୁଥିଲୁ । କାରଣ ସେଠାରେ ଓଡ଼ିଆ ସ୍କୁଲ ଆଦୌ ନଥିଲା । ଅବସର ସମୟରେ ବାପା ଇଂରାଜୀ ଶିକ୍ଷା ଦେଉଥିଲେ ; କିନ୍ତୁ ଓଡ଼ିଆ ଶିକ୍ଷା ହେଲା ମାଆଙ୍କ ପାଖରେ । ସେଠାରେ ଓଡ଼ିଆ ଭାଷା ଆଦୌ ନ ଥିବାରୁ ଆମର ପାଠ ପଢ଼ିଥିଲା ତଥାକଥିତ ହିନ୍ଦୀ ଭାଷାରେ । ଭାଷାଭେଦ ଯୋଗେ କେବଳ ଆମେ ପାଞ୍ଚ ଭାଇଭଉଣୀ ଥିଲୁ ପରସ୍ପରର ସଙ୍ଗୀ, ସାଥୀ । ଟିକେ ବଡ଼ ହୋଇ ଓଡ଼ିଆ ଭାଷାକୁ ପରଭାଷା ରୂପେ ଶିଖିଥିଲୁଁ ।" (ଚକ୍ରଧର ମହାପାତ୍ର—କୁନ୍ତଳାକୁମାରୀ ଜୀବନ ଚରିତ ପୃ—୨୦) ।

ବାଲ୍ୟାବସ୍ଥାରୁ କୁନ୍ତଳାକୁମାରୀଙ୍କର ପଢ଼ାପଢ଼ି ପ୍ରତି ଗଭୀର ମନୋନିବେଶ ଥିଲା । ଅଧ୍ୟୟନରେ ବ୍ୟସ୍ତ ରହି ସେ ସମୟେ ସମୟେ ଖାଇବା ପିଇବା ମଧ୍ୟ ଭୁଲି ଯାଉଥିଲେ । ପିତାଙ୍କ ନିକଟରୁ ଇଂରାଜୀ ଶିକ୍ଷା ଲାଭକରି ସେ ଏଭଳି ଦକ୍ଷ ହୋଇଥିଲେ ଯେ କଥାବାର୍ତ୍ତାରେ ସେ ଇଉରୋପିଆନ୍‌ମାନଙ୍କୁ ମୁଗ୍‌ଧ କରି ଦେଉଥିଲେ । ଥରେ ପଣ୍ଡିତ ଇନ୍ଦ୍ର ତାଙ୍କ ଇଂରେଜୀ କଥାବାର୍ତ୍ତାରେ ଆଶ୍ଚର୍ଯ୍ୟ ହୋଇ କହିଥିଲେ, ଡାକ୍ତରାଣୀ, ତୁମେ ନିଶ୍ଚୟ ବିଶ୍ୱବିଦ୍ୟାଳୟ ଶିକ୍ଷାଶେଷ କରିଛ ଅଥବା ବିଲାତରେ ମାଟ୍ରିକ୍ ପାଶ୍ କରିଛ । କିପରି କହୁଛ ଯେ ବିଦ୍ୟାଳୟରେ ଚାରିଟି ମାସ ଛଡ଼ା ଅଧିକ ଯୋଗ ଦେଇନାହଁ ? ତୁମ ଇଂରେଜୀ ଉଚ୍ଚାରଣ ମୋତେ ସ୍ତମ୍ଭିତ କରିଛି ଯେ, ଜଣେ ଅବହେଳିତ ପ୍ରଦେଶର ନାରୀ ଏପରି ଇଂରେଜୀ କହିପାରେ ପୁଣି ଉଚ୍ଚାରଣ କରିପାରେ ?" (ଚକ୍ରଧର ମହାପାତ୍ର—କୁନ୍ତଳାକୁମାରୀ ଜୀବନ ଚରିତ ପୃ—୨୩) ।

ଏହି 'ଅବହେଳିତ' ଶବ୍ଦ ହୁଏତ ସେଦିନ କୁନ୍ତଳା କୁମାରୀଙ୍କ ମନରେ ଗଭୀର ରେଖାପାତ କରିଥିଲା । ସୁତରାଂ ସେ ଓଡ଼ିଶାର ଚନ୍ଦ୍ରମୁଖୀ ଛବିକୁ ବାହାରେ ପରିଚିତ କରାଇ ଦେବାକୁ ଆପ୍ରାଣ ଚେଷ୍ଟା ଚଳାଇ-ଥିଲେ । କୁନ୍ତଳାକୁମାରୀଙ୍କର ଓଡ଼ିଆ ଭାଷା ପ୍ରତି ଅତ୍ୟନ୍ତ ଆଗ୍ରହ ଦେଖି ତାଙ୍କର ପିତା ବହୁ କଷ୍ଟରେ ମଧୁସୂଦନ ରାଓଙ୍କ 'ବର୍ଣ୍ଣବୋଧ' ଓ 'ଶିଶୁପାଠ' ଇତ୍ୟାଦି କଟକରୁ ମଗାଇ ନେଇଥିଲେ । ବର୍ଣ୍ଣବୋଧ ପରେ ସେ 'ସାହିତ୍ୟ କୁସୁମ' ଓ 'ସାହିତ୍ୟ ତରଙ୍ଗ' ପଢ଼ିଥିଲେ । ପିତାଙ୍କୁ ପଚାରି ପଚାରି ସେ ଇତିହାସ, ଭୂଗୋଳ, ବ୍ୟାକରଣ ଆଦି ପଢ଼ୁଥିଲେ ।

ଏପରିକି ମାଆଙ୍କ ବାଇବେଲକୁ ପଢ଼ି ପଢ଼ି ସେ ମୁଖସ୍ଥ କରି ପକାଇଥିଲେ । ଓଡ଼ିଶାର ସୀମାରେଖାଠାରୁ ବହୁ ଦୂରରେ ରହି ମଧ୍ୟ ସେ ଓଡ଼ିଆ ଭାଷାକୁ ଆୟତ୍ତ କରିପାରିଥିଲେ । ଓଡ଼ିଆ ଭାଷାର ସାମାନ୍ୟ କେତେକଖଣ୍ଡ ପୁସ୍ତକକୁ ଅଭ୍ୟାସ କରି ପଢ଼ୁ ପଢ଼ୁ ତାଙ୍କର ଓଡ଼ିଆ ଭାଷା ଉପରେ ଦଖଲ ଆସିଥିଲା ।

କେବଳ ଇଂରାଜୀ ଓ ଓଡ଼ିଆ ନୁହେଁ ସାତବର୍ଷ ବୟସରୁ ସେ ବଜାର ସଉଦା ଚଠାରୁ ବଙ୍ଗଳା ଓ ହିନ୍ଦୀ ଅକ୍ଷର ମଧ୍ୟ ଶିକ୍ଷା କରିଥିଲେ । କାରଣ ଅଳ୍ପରେ ସନ୍ତୁଷ୍ଟ ହେବାର ଶିଶୁ ସେ ନଥିଲେ । ପ୍ରତି ମୁହୂର୍ତ୍ତରେ କିଛି ନୂତନ ଶିକ୍ଷାଲାଭ ନିମିତ୍ତ ସେ ବ୍ୟସ୍ତହୋଇ ପଡ଼ୁଥିଲେ । ଦଶବର୍ଷ ବୟସ ବେଳକୁ ସେ ଓଡ଼ିଆ, ଇଂରେଜୀ, ବଙ୍ଗଳା ଓ ହିନ୍ଦୀରେ ସୁସ୍ପଷ୍ଟ ଜ୍ଞାନ ହାସଲ କରିପାରିଥିଲେ ।

ଶୈଶବରୁ କୁନ୍ତଳାକୁମାରୀ ଅତ୍ୟନ୍ତ ସ୍ୱାଧୀନଚେତା ଥିଲେ । ଯାହା ଯେଉଁଠି ଠିକ୍ ବୋଲି ଭାବୁଥିଲେ ନିର୍ଭୟରେ ତାହା ତତ୍‌କ୍ଷଣାତ୍ ପ୍ରକାଶ କରୁଥିଲେ । ଏହି ନିର୍ଭୀକତା ହିଁ ପରବର୍ତ୍ତୀ ଜୀବନରେ ସ୍ୱାଧୀନତା ସଂଗ୍ରାମ କାଳରେ ତାଙ୍କୁ ଏକ ନାରୀ-ସୈନିକ ରୂପେ ପରିଚିତ କରାଇ ଥିଲା । ସୁଦୂର ବର୍ମାରେ ପ୍ରାଥମିକ ଜୀବନର ଦୀର୍ଘ ଚଉଦ ବର୍ଷ ଅତିବାହିତ ହେଲା ପରେ ସେ ଓଡ଼ିଶାକୁ ଫେରି ଆସିଥିଲେ । ଏହି ଖୋର୍ଦ୍ଧା ରହଣି ସମୟରେ ସେ ହିନ୍ଦୁ ଲଳନାମାନଙ୍କ ସହିତ ମିଶିବାର ସୁଯୋଗ ଲାଭ କଲେ । ହିନ୍ଦୁ ବାଳିକାମାନଙ୍କର ଅକପଟ ସ୍ନେହ, ମମତା ଓ ସୌହାର୍ଦ୍ଦ୍ୟରେ ସେ ମୁଗ୍ଧ ହୋଇ ପଡ଼ିଥିଲେ ।

୧୯୧୭ ମସିହାରେ କୁନ୍ତଳାକୁମାରୀଙ୍କୁ ତାଙ୍କ ମାଆ ରେଭେନ୍‌ସା ଗାର୍ଲ୍‌ସ ସ୍କୁଲ୍‌ରେ ପଢ଼ାଇବାପାଇଁ ସ୍ଥିର କଲେ । ସ୍କୁଲରେ ତାଙ୍କର ନାମ ଲେଖାହେଲାବେଳକୁ ୮ମ ଶ୍ରେଣୀର ଶିକ୍ଷା ଆଉ ମାତ୍ର ଚାରିମାସ ଥିଲା । ସେହି ବର୍ଷ ବାର୍ଷିକ ପରୀକ୍ଷାରେ କୁନ୍ତଳାକୁମାରୀ ପ୍ରତ୍ୟେକ ବିଷୟରେ ସର୍ବୋଚ୍ଚ ନମ୍ବର ରଖି ଶ୍ରେଣୀରେ ପ୍ରଥମ ହୋଇ ନବମ ଶ୍ରେଣୀକୁ ଉତ୍ତୀର୍ଣ୍ଣ ହେଲେ । ଆଉ କେତେଦିନ ସ୍କୁଲରେ ପଢ଼ି ସାରି କଲେଜରେ ପାଠ ପଢ଼ିବା ପାଇଁ ସେ ଇଚ୍ଛା ପ୍ରକାଶ କରିଥିଲେ । ମାତ୍ର ଦାରିଦ୍ର୍ୟ ହେତୁ ୧୯୧୮ ମସିହାରେ ସେ କଟକ ମେଡ଼ିକାଲ୍ ସ୍କୁଲରେ ନାମ ଲେଖାଇଥିଲେ ।

ରେଭେନ୍‌ସା ବାଳିକା ସ୍କୁଲରୁ ବିଦାୟ ନେବା ସମୟରେ ତାଙ୍କ ପାଇଁ ସ୍କୁଲ ତରଫରୁ ଏକ ଭୋଜସଭାର ଆୟୋଜନ କରାଯାଇଥିଲା । ସେ ଯାଏ କୌଣସି ଝିଅ କବିତା ଲେଖି ବିଦାୟ ମାଗିବା ପ୍ରଥା ସ୍କୁଲରେ ପ୍ରଚଳିତ ହୋଇନଥାଏ । ଶିକ୍ଷୟିତ୍ରୀମାନେ ମଧ୍ୟ ଏ ପ୍ରଥାକୁ ଅପସନ୍ଦ କରିଥାନ୍ତି । କୁନ୍ତଳାକୁମାରୀ ମଧ୍ୟ କେବେ କବି ହେବେ ଏ କଥା କଳ୍ପନା କରିନଥିଲେ । ମାତ୍ର ସ୍କୁଲର ରମ୍ୟ ପରିବେଶ, ସହପାଠିନୀମାନଙ୍କର ଅକପଟ ସ୍ନେହ, ଶିକ୍ଷୟିତ୍ରୀମାନଙ୍କର କର୍ତ୍ତବ୍ୟନିଷ୍ଠା କୁନ୍ତଳାକୁମାରୀଙ୍କୁ ଏପରି ବିହ୍ୱଳ କରିଥିଲା ଯେ ସେ ଏକ କବିତା ରଚନା କରି ବିଦାୟ ସଭାରେ ଆବୃତ୍ତି କରିଥିଲେ । ଏହି କବିତା ସହପାଠିନୀ ଓ ଶିକ୍ଷୟିତ୍ରୀ-ମାନଙ୍କର ଚକ୍ଷୁକୁ ଲୋତକାପ୍ଳୁତ କରି ଦେଇଥିଲା । କବିତାଟି ହେଲା—

"ବାଜି ଛନ୍ଦ ବୀଣା   ବାଜଣା ସୁଜଣା
ରମ୍ୟ ଏ ନନ୍ଦନ ବନେ
ମାଲୁଣୀ ପିଉରୀୟେ   ପଣ୍ଡିତା ନାରୀୟେ
ଯହିଁ ବସି ରମ୍ୟଭୂମେ ।

ଗୋଟି ଗୋଟି ସତେ   ପାରିଜାତ କେତେ
ପାଳନ୍ତି ଯତନ କରି
ପୋଷନ୍ତି ଜ୍ଞାନ ମଞ୍ଜି   ଆଳବାଳ ରଚି
ବୁଦ୍ଧିରେ ବିବେକ ଭରି ।

ଯାଜନେମା ସମ ପାରିଜାତ ସୃଷ୍ଟି
ସ୍ୱର୍ଗ ସମ୍ପଦରୁ ବଳେ
କ୍ଷୁଦ୍ରଯାନା ମୁହିଁ ସେ ପରଶ ପାଇ
ଧନ୍ୟ ଆନନ୍ଦ ବନ୍ୟାଲେ ।
ବନ୍ଦନୀୟା ମମ ଅହେ ଦେବୀଗଣ
ଭକ୍ତିଭରେ ନତଶିରେ
ସ୍ୱଦେଶୀ ଏ ପୂତ ଭାରତୀ ସେବାତ
ଯେନ ପୁଷ୍ପ ଉପହାରେ ।
ତୁମ୍ଭରି କୃପାରେ ଲଳିତ ମଧୁରେ
ଲଭିଲା ଭାଷା ସମ୍ପଦ
ଜନନୀ ଉତ୍କଳ ମହତ କୋମଳ
ବନ୍ଦିଲି ତା ପଦ୍ମପଦ ।
ଶ୍ରୀ ପଦ୍ମରେ ଯାନା ବଳିମାଗେ କନ୍ୟା
ସଫଳ ହେଉ ଜୀବନ
ମାତୃଭାଷା-ପୁଷ୍ପ ତୋଳିଣ ସହର୍ଷେ
ହେବ ବରେଣ୍ୟ ମହାନ ।
ହେ ଭଗିନୀ କୁଳ କନକ କୋମଳ
ସମ ତୁମେ ଲେଭନୀୟା
ଏ ଯାନା ସଖିରେ ବିଦ୍ୟା ପ୍ରଭାଭାରେ
କରିଥିବ ଟିର ଦୟା ।
ତୁମ ସବୁ ସ୍ମୃତି ଅନ୍ତରେ ସାଇତି
ବିଦାୟ ନେଉଛୁ ଆଜ
ଉତ୍କଳ ଜନନୀ ଯଶୋଗୀତେ ଶାଣି
ଏ ଜୀବନ ହେଉ ମାଜ ।"

ଏଇଠି କୁନ୍ତଳାକୁମାରୀଙ୍କ କବି-ଜୀବନର ମୂଳଭିତ୍ତି ସ୍ଥାପିତ ହୋଇଥିଲା । ଏହାପରେ ସେ ଟିକିଏ ସମୟ ପାଇଲେ ପଦଯୋଡ଼ି ଗୀତ ରଚନା କରୁଥିଲେ ।

କଟକ କେଶରପୁରରେ ରହି କୁନ୍ତଳାକୁମାରୀ ପ୍ରତ୍ୟହ ଚାଲି ଚାଲି ମେଡ଼ିକାଲ ସ୍କୁଲକୁ ଯାଉଥିଲେ । ଦୁଃଖେ ସୁଖେ ତାଙ୍କର ଦୁଇଟି ବର୍ଷ

କଟିଗଲା । ତୃତୀୟ ବର୍ଷ ଭାଇ ସାମୁଏଲର ମୃତ୍ୟୁ ସାଙ୍ଗକୁ ଆର୍ଥିକ ଅନାଟନ ତାଙ୍କୁ ବିବ୍ରତ କରିଥିଲା । ମାତ୍ର ତହିଁରେ ସେ ସମ୍ପୂର୍ଣ୍ଣ ଦବିଯାଇ ନଥିଲେ । ୧୯୨୧ ମସିହାରେ କୁନ୍ତଳାକୁମାରୀ ବିହାର ଓଡ଼ିଶା ମେଡ଼ିକାଲ ବୋର୍ଡ ପରୀକ୍ଷାରେ ସର୍ବୋଚ୍ଚ ନମ୍ବର ରଖି ସର୍ବପ୍ରଥମ ହୋଇ ସ୍ୱର୍ଣ୍ଣପଦକ ଲାଭ କରିଥିଲେ । ସେ ମେଡ଼ିକାଲରେ ଚାରି ବର୍ଷ ପଢ଼ିବା ମଧ୍ୟରେ ୧୭ ଗୋଟି ରୌପ୍ୟ ଓ ସ୍ୱର୍ଣ୍ଣପଦକ ହାସଲ କରିଥିଲେ । ଏହି ସମୟରେ ଡାକ୍ତର କୈଳାସଚନ୍ଦ୍ର ରାଓ କୁନ୍ତଳାକୁମାରୀଙ୍କ ଜୀବନ ପରିଧି ମଧ୍ୟକୁ ଟାଣିହୋଇ ଆସିଥିଲେ । ୧୯୨୧ ମସିହାଠାରୁ ୧୯୨୮ ଶେଷଯାଏ କୁନ୍ତଳାକୁମାରୀ ଡାକ୍ତର ରାଓଙ୍କ କର୍ତ୍ତୃତ୍ୱାଧୀନରେ ଥିଲେ । ତାଙ୍କର ସାହିତ୍ୟିକ ପ୍ରତିଭା ଏବଂ ଆଦର୍ଶ ସମୟ ମଧ୍ୟରେ ବିକଶିତ ହୋଇଥିଲା । ସୁତରାଂ କୁନ୍ତଳାକୁମାରୀଙ୍କ ୩୨ ବର୍ଷ ଜୀବନ କାଳ ମଧ୍ୟରୁ ଏହି ସ୍ୱଳ୍ପ ସମୟ ହିଁ ତାଙ୍କୁ ଅମରତ୍ୱ ପ୍ରଦାନ କରିଛି କହିଲେ ଅତ୍ୟୁକ୍ତି ହେବ ନାହିଁ । କୁନ୍ତଳାକୁମାରୀ ନିଜର ଏକ ପତ୍ରରେ ଲେଖିଛନ୍ତି, "ବନମଲ୍ଲିକାକୁ ସେ (ଡାକ୍ତର ରାଓ) ଉଦ୍ୟାନରେ ସ୍ଥାନ ଦେଇ ପ୍ରତ୍ୟେକ ଦର୍ଶକର ମନମୋହିନୀ କରିଛନ୍ତି । ମୋର ଗୌରବ, ମୋର ପ୍ରତିଷ୍ଠା, ସେହି ବାବୁଙ୍କ ଅକ୍ଲାନ୍ତ ପରିଶ୍ରମ ଯୋଗୁ । ଓଡ଼ିଶାରେ ବାବୁଙ୍କ ଜନ୍ମ ହୋଇ ନଥିଲେ କୁନ୍ତଳା କୁମାରୀ କବି ହିସାବରେ ଖ୍ୟାତି ହୋଇ ନଥାନ୍ତା । × × × ମୋଠି ଯେତେ ଦୁର୍ବଳତା, ଯେତେ ଅକର୍ମଣ୍ୟତା ତାଙ୍କର କଲ୍ୟାଣରୁ ଦିନେ ଦିନେ ଦୂର ହେଉଛି । ଜଗତରେ ଅନ୍ୟମାନେ ମୋତେ ପ୍ରଶଂସା କରିବେ ବା ମୋର ନିନ୍ଦା ହେବେ ; କିନ୍ତୁ ମୋର ଗୁରୁହେବା ଯୋଗ୍ୟତା କାହାର ନାହିଁ । ମୋ ଗୁରୁଙ୍କୁ ତୁମେ ଦେଖୁଛ ଅନ୍ୟ କାହାର ସେତେବଡ଼ ଉଚ୍ଚ ହୃଦୟ ହେଲେ କିନା ।" (କୁନ୍ତଳାକୁମାରୀ ଜୀବନ ଚରିତ ପୃ-୧୬୭) ଡାକ୍ତର ରାଓଙ୍କ ଯୋଗୁଁ ହିଁ କୁନ୍ତଳାକୁମାରୀ ବିପୁଳ ଖ୍ୟାତି ଅର୍ଜନ କରି ପାରିଛନ୍ତି । ଏହା ନିଃସନ୍ଦେହରେ କୁହାଯାଇପାରେ ।

କୃତିତ୍ୱର ସହ ଡାକ୍ତରୀ ପାସ କଲାପରେ ସେ କଟକରେ ଅବସ୍ଥାନ କରିଥିଲେ । ଏହିଠାରେ ହିଁ ତାଙ୍କ ସାହିତ୍ୟିକ ଜୀବନର ଭୂୟୋ ବିକାଶ ସାଧିତ ହୋଇଥିଲା । ତାଙ୍କର ପ୍ରଥମ ଉପନ୍ୟାସ 'ଭ୍ରାନ୍ତି' ୧୯୨୨ ମସିହାରେ ଓ କବିତା ପୁସ୍ତକ 'ଅଞ୍ଜଳି' ୧୯୨୩ ମସିହାରେ ପ୍ରକାଶିତ ହୋଇଥିଲା । ଏହାପରେ ୧୯୨୪ ମସିହାରେ ୭ ଗୋଟି ଖଣ୍ଡ କବିତାକୁ ନେଇ ଉତ୍କଳ

ସାହିତ୍ୟ ପ୍ରେସରୁ "ଉଚ୍ଛ୍ୱାସ" ସାହିତ୍ୟ ପୁସ୍ତକ ପ୍ରକାଶ ପାଇଥିଲା । ପରେ ପରେ ତାଙ୍କର 'ନଅଙ୍ଗୁରୀ' ନାମକ ଏକ ଉପନ୍ୟାସ ପ୍ରେସରୁ ବାହାରିବା ସଙ୍ଗେ ସଙ୍ଗେ ଏହାର ଅର୍ଦ୍ଧାଧିକ ବିକ୍ରୀ ହୋଇ ଯାଇଥିଲା । ଏହାପରେ କୁନ୍ତଳାକୁମାରୀ ଏକ ଦୀର୍ଘକାୟ ଉପନ୍ୟାସ ରଚନା କରିବେ ବୋଲି ମନସ୍ଥ କରିଥିଲେ । ତେଣୁ ସେ 'କାଳିବୋହୂ' ଓ 'ପରଶମଣି' ପରେ ୧୯୨୮ ମସିହାରେ ଦୀର୍ଘକାୟ ଉପନ୍ୟାସ 'ରଘୁ ଅରକ୍ଷିତ' ରଚନା କରିଥିଲେ । ଏହା ବ୍ୟତୀତ 'ଅର୍ଚ୍ଚନା', 'ପ୍ରେମ ଚିନ୍ତାମଣି', 'ଆହ୍ୱାନ' ଆଦି କବିତାପୁସ୍ତକ କୁନ୍ତଳାକୁମାରୀଙ୍କ କବି-ପ୍ରତିଭାର ପରିଚୟ ପ୍ରଦାନ କରେ ।

କୁନ୍ତଳା କୁମାରୀ କେବଳ ଓଡ଼ିଆରେ ନୁହେଁ; ଇଂରାଜୀ, ବଙ୍ଗଳା ଓ ହିନ୍ଦୀ ଭାଷାରେ ମଧ୍ୟ ଲେଖାଲେଖି କରୁଥିଲେ । ଇଂରାଜୀରେ ସେ 'The neglected land' ଆଦି କବିତା ରଚନା କରିଥିଲେ । ଦିଲ୍ଲୀରେ ଅବସ୍ଥାନ ସମୟରେ ସେ ହିନ୍ଦୀ ସାହିତ୍ୟ ସଭାର Vice President ଏବଂ ନାଟ୍ୟ ପରିଷଦର ପ୍ରେସିଡେଣ୍ଟ ଥିଲେ । ହିନ୍ଦୀରେ ସେ 'ନାରୀ' 'ଜାଗରଣ' 'ସଙ୍ଗୀତ' 'ସୃଜନ' ଆଦି ପୁସ୍ତକ ରଚନା କରି ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର 'ହଲ୍‌କା ଧାରଦ' 'ପରମ ପ୍ରେମିକ' ପ୍ରଭୃତି ହିନ୍ଦୀ କବିତା ପାଠକ ମନରେ ଗମ୍ଭୀର ଆଲୋଡ଼ନ ସୃଷ୍ଟି କରେ ।

ଉତ୍କଳର ଉନ୍ନତିକଳ୍ପେ କୁନ୍ତଳାକୁମାରୀ ଭବିଷ୍ୟତରେ ଅନେକ ସ୍ୱପ୍ନ ଦେଖୁଥିଲେ । ସେ କେବଳ ନିଜେ ବଡ଼ ହେବାକୁ ଚାହୁଁ ନଥିଲେ । ଉତ୍କଳର ବହୁମୁଖୀ ଦିଗକୁ ଉନ୍ନତ କରିବା ନିମିତ୍ତ ସେ ସର୍ବଦା ତତ୍ପର ଥିଲେ । ସେ କହୁଥିଲେ—"ମୁଁ ଘରେ ଘରେ ମାଆ ଭଉଣୀ ମଧ୍ୟରେ ସ୍ନେହ ଦୟା କ୍ଷମାର ସ୍ରୋତ ବୁହାଇବି । ମୁଁ କେବଳ ଉଚ୍ଚ ହେବି ସ୍ପୃହା ମୋର ଉଦ୍ଦେଶ୍ୟ ନୁହେଁ । ଯେଉଁଦିନ ସାହିତ୍ୟର ସେବାରେ ହେଉ, ଶିକ୍ଷାଦାନରେ ହେଉ, ଧନ ବାଣ୍ଟିବାରେ ହେଉ, ଚିକିତ୍ସାରେ ହେଉ, ନାନା ଭାବରେ ଯେତେ ପାରିବି ମୋ ଜାତିର ଉନ୍ନତି ସଙ୍ଗେ ସଙ୍ଗେ ବହୁ ସଦ୍‌ଗୁଣବନ୍ତ ମନୁଷ୍ୟ ଗଢ଼ିଉଠିବ । ବିଶେଷରେ କୁସଂସ୍କାରର ସଂପୂର୍ଣ୍ଣ ଉଚ୍ଛେଦ ପାଇଁ ମୁଁ ବଦ୍ଧପରିକର ହେବି ।" କେବଳ କଥାରେ ନୁହେଁ, କୁନ୍ତଳାକୁମାରୀ ଯାହା କହୁଥିଲେ, ତାହା କାର୍ଯ୍ୟରେ ମଧ୍ୟ ପରିଣତ

କରୁଥିଲେ । ତାଙ୍କ ଜୀବନର ଗଣି ଗଣି ଘଟଣା ଏହାର ସତ୍ୟତା ଯୋଗାଇ ଥାଏ ।

ଉତ୍କଳମାତାର ସର୍ବାଙ୍ଗୀନ ଉନ୍ନତି ବିଧାନରେ କୁନ୍ତଳା କୁମାରୀ ସର୍ବଦା ଚେଷ୍ଟିତ ଥିଲେ । ଅସ୍ପୃଶ୍ୟ ଜାତିପ୍ରତି ତାଙ୍କ ମନରେ ଅସରନ୍ତି ମମତାର ସ୍ରୋତ ଛୁଟିଥିଲା । ଦରିଦ୍ର, ଅଶିକ୍ଷିତ, ଅବହେଳିତଙ୍କଠାରେ ସଭ୍ୟତାର ଆଲୋକ ପହଞ୍ଚାଇବା ତାଙ୍କର ପ୍ରଧାନ ଲକ୍ଷ୍ୟ ଥିଲା ।

ସେମାନେ ପାଠ ପଢ଼ି ଜ୍ଞାନର ଆଲୋକରେ ଚତୁର୍ଦ୍ଦିଗକୁ ଆଲୋକିତ କରିପାରିବେ ବୋଲି କୁନ୍ତଳାକୁମାରୀଙ୍କର ଦୃଢ଼ ଆଶା ଥିଲା । ତାଙ୍କରି ଭାଷାରେ—"ନିଜର ସର୍ବସ୍ୱ ଦେଇ ଓଡ଼ିଶାକୁ ପାଠ ପଢ଼ାଇବା ପାଇଁ ମୁଁ ବସିଛି । ସମସ୍ତେ ମୁଣ୍ଡଆଡ଼ୁ ଚେଷ୍ଟା କରୁଥିଲେ ମୁଁ ଗୋଡ଼ ଆଡ଼ୁ ଚେଷ୍ଟା କରୁଛି । ପାଣ, ହାଡ଼ି, କଣ୍ଡରା, ବାଉରୀ ସ୍ତ୍ରୀଙ୍କୁ ମଣିଷ କରିବି, ଏ ପାଠ ପଢ଼ିବେ, ଏ ଖବରକାଗଜ ପଢ଼ିବେ, ଦେଢ଼ କୋଟି ଶିକ୍ଷିତ ଲୋକଙ୍କୁ କେଉଁ ଶକ୍ତି ଦମିତ କରି ରଖିବ ? ପାଲୁଣୀ, ବାଉରୁଣୀ ଶିକ୍ଷିତା ହେବେ । ସ୍ତ୍ରୀଙ୍କ ପାଠ ପଢ଼ା ଖର୍ଚ୍ଚ ଏଇ ଯୋଗାଇବେ । ଜଣ ପିଛା ଦ' ଅଣା । ଶତ ଶତ ଲୋକ ପଢ଼ିବାକୁ ରାଜି । ପାଠ ପଢ଼ିଲେ ଆଲୁଅ ପାଇବେ । ଜ୍ଞାନ ହେବ । × × × ତାଙ୍କର ଭାଗବତ ଘର ହେବ । ସେ ପୋଥି ବୋଲିବେ । ତାସ, ବ୍ରିଶା, ନିଶାରୁ ରକ୍ଷା ପାଇବେ ।

ସମଗ୍ର ଓଡ଼ିଶାରେ ହେବ ଅଭିଯାନ । ଜଣେ ଶିକ୍ଷିତ ନିଜ ଜୀବନ କାଳ ମଧ୍ୟରେ ଅନ୍ତତଃ ଗଣ୍ଡାଏ ଲୋକଙ୍କୁ ପାଠ ପଢ଼ାଇବ । ଯେଉଁ ହାଡ଼ି, ପାଣି, ତନ୍ତୀ, ଚମାର, ବାଉରୀ, କଣ୍ଡରା, ବଢ଼େଇ, କମାର, କେଉଟ, ଗଉଡ଼ଙ୍କୁ ଲୋକେ ହେୟଜ୍ଞାନ କରୁଥିଲେ, ସେହି ତ ସମାଜର ମେରୁଦଣ୍ଡ । ଏଥିରେ ଜାତିର ଗର୍ବ ନାହିଁ, ଧର୍ମର ଭିନ୍ନତା ନାହିଁ । ଓଡ଼ିଆ ମାତୃଭାଷା ସମସ୍ତଙ୍କର ଭାଷା । ପଠାଣ ପଢ଼ିବେ, କନ୍ଧ, କୋହ୍ଲ ପଢ଼ିବେ, ତାଙ୍କରି ଭିତରୁ ଦେଶ ନେତା ମହାତ୍ମା ବାହାରିବେ ।"

(ଚକ୍ରଧର ମହାପାତ୍ର— କୁନ୍ତଳାକୁମାରୀ ଜୀବନ ଚରିତ, ପୃ-୨୨୪)

କୁନ୍ତଳାକୁମାରୀ ମର୍ମେ ମର୍ମେ ଅନୁଭବ କରିଥିଲେ । ଯେତେଦିନ ଯାଏ ଏହି ଅବହେଳିତ ଗୋଷ୍ଠୀର ଉନ୍ନତି ନ ହୋଇଛି ସେତେଦିନ ଯାଏ ଜାତିର ଉନ୍ନତି ସୁଦୂର ପରାହତ ହୋଇ ରହିବ ।

ସେ ସମୟରେ ଦରିଦ୍ର ଛାତ୍ରମାନେ ଆର୍ଥିକ ସାହାଯ୍ୟ ନିମିତ୍ତ ବାରଦୁଆର ହେଉଥିଲେ । କୁନ୍ତଳାକୁମାରୀ ଏଥିପାଇଁ ମାସରେ ଶହେରୁ ଦୁଇଶହ ଟଙ୍କା ବିତରଣ କରୁଥିଲେ । କେତେକ ପିଲାଙ୍କୁ ମାସିକ ୨୫-୦୦ ଲେଖାଏଁ ବୃତ୍ତିସ୍ୱରୂପ ପ୍ରଦାନ କରୁଥିଲେ । ଛାତ୍ରମାନଙ୍କୁ ନିଜ କର୍ତ୍ତବ୍ୟ ପଥରେ ଆଗେଇ ଯିବାକୁ ପରାମର୍ଶ ଦେଇ ସେ କହୁଥିଲେ--'ବାବୁ ! ବ୍ରହ୍ମଚର୍ଯ୍ୟାଶ୍ରମରେ କଦାପି ଦୁଃଖ ହେବନି ଚିନ୍ତା କର ନାହିଁ । ଦୁଃଖର ଦିନ ଆପେ ଆପେ ଅପସରି ଯିବ । ପୁଣି ତୁମେ ସୁଖୀ ହେବ । ଈଶ୍ୱର ଆଜ ଏକ ଅତି ସମୁନ୍ନତ ଜାତି ଉତ୍କଳକୁ ଦୁଃଖ ସାଗରରେ ବୁଡ଼ାଇ ଦେଇଛନ୍ତି । ସେ ପୁଣି ଅଚିରେ ସୁଖୀ ହେବ । ହେ ତରୁଣ, ତୁମ ଜୀବନର ମୂଲ୍ୟ ଅକଳନୀୟ । ତୁମେ ତୁଚ୍ଛରେ ଏ ଜଗତକୁ ଆସିନାହଁ । କର୍ତ୍ତବ୍ୟ ପରାୟଣ ହୋଇ ଆଗେଇ ଚାଲ । ତୁମରି କୀର୍ତ୍ତି ବିଶାଳ । ତୁମର ଭାଷା-ସାହିତ୍ୟ ସର୍ବବନ୍ଦିତା, ତୁମର ଶିଳ୍ପ ବିଶ୍ୱଜଗତରେ ଅନନ୍ୟ । ତୁମର ପୂର୍ବଜଙ୍କ କୀର୍ତ୍ତି ଅପ୍ରତିଦ୍ୱନ୍ଦୀ—ଆଖି ଖୋଲ···।" (କୁନ୍ତଳାକୁମାରୀ ଜୀବନଚରିତ, ପୃ-୧୨୫)।

ନିଃସହାୟ, ଦୁଃଖୀ, ଦରିଦ୍ର, ସର୍ବହରା ଜନତାଙ୍କ ପ୍ରତି କୁନ୍ତଳା-କୁମାରୀଙ୍କ ହୃଦୟ ସର୍ବଦା କରୁଣାର୍ଦ୍ର ଥିଲା । କାଲ, ଜଡ଼ା, ଅନ୍ଧ, ତାଙ୍କ ଦୁଆରେ ପାଦ ଥିଲେ । ସେମାନଙ୍କୁ ବାର୍ଷିକ ଦୁଇସାରଲେଖାଏଁ ଧୋତି, ଗଞ୍ଜି, କୁର୍ତ୍ତା, ଶୀତବସ୍ତ୍ର, କାହାକୁ ସପ୍ତାହରେ ୧ ଟଙ୍କା ଓ ୨ ଟଙ୍କା କରି ଦେଉଥିଲେ । ଏପରିକି ଭିକାରୀମାନଙ୍କୁ ନିଜର ଖାଦ୍ୟଦ୍ରବ୍ୟ ପ୍ରଦାନ କରି ସେ ଅଶେଷ ଆନନ୍ଦ ଲାଭ କରୁଥିଲେ । ଥରେ କୁନ୍ତଳାକୁମାରୀ ଦିନ ୨ଟା ବେଳେ ଡାକ୍ତରଖାନାରୁ ଫେରି ଖାଇ ବସିଥାନ୍ତି । ତାଙ୍କର ମା' ଝିଅ ପାଇଁ ମାଛଭଜା ଓ ମାଂସର ଝୋଳ ଆଦି ଯତ୍ନରେ ରାନ୍ଧିଥାନ୍ତି । ଏହି ସମୟରେ ଜଣେ ବୁଭୁକ୍ଷୁର ସ୍ୱର କୁନ୍ତଳାକୁମାରୀଙ୍କ କର୍ଣ୍ଣରେ ପଡ଼ିଲା । ସେ ତତ୍‌କ୍ଷଣାତ୍ ସେହି ଖାଦ୍ୟ ପଦାର୍ଥ ଭିକାରୀକୁ ପ୍ରଦାନ କରି ଆତ୍ମତୃପ୍ତି ଲାଭ କଲେ । ତାଙ୍କର ମା' ଏହାର ବିରୋଧ କରନ୍ତେ, କୁନ୍ତଳାକୁମାରୀ କହିଲେ—"ମାଆ ତାର କରୁଣ ଡାକ ମୋତେ ଅଭିଭୂତ କରିଦେଲା ।

ଭବନ୍ତି, ମୁଁ ବଜାରରୁ ସେରେ ରସଗୋଲା ଅଣାଇ ଏକ୍ଷଣି ଖାଇ ପାରିବ —ସେ କେଉଁଠୁ ଖାଇବ ?" କେବଳ ସେତିକି ନୁହେଁ । କୁନ୍ତଳାକୁମାରୀ ନିଜର ଶାଢ଼ୀ, ସାୟା, ବ୍ଲାଉସ୍ ମଧ୍ୟ ଦରିଦ୍ରମାନଙ୍କ ମଧ୍ୟରେ ବିତରଣ କରି ଦେଉଥିଲେ ।

କେହି ତାଙ୍କୁ ମାଆ ବୋଲି ସମ୍ବୋଧନ କଲେ ସେ ଅତିଶୟ ଆନନ୍ଦରେ ଅଧୀର ହୋଇ ପଡ଼ୁଥିଲେ । ତାଙ୍କ ଜୀବନକାଳର ୨୧ ରୁ ୩୮ ବର୍ଷ ମଧ୍ୟରେ ଯେ କେହି ତାଙ୍କ ପାଖକୁ କିଛି ସାହାଯ୍ୟ ଆଶାରେ ଯାଇଛି, ସେ ସନ୍ତୋଷ ଚିତ୍ତରେ ଫେରିଛି । ଏପରିକି ବଡ଼ ବଡ଼ ଆର୍ଥିକ ବିପଦରୁ ସେ ଲୋକଙ୍କୁ ହଜାର ହଜାର ଟଙ୍କା ଦେଇ ମୁକ୍ତ କରିବାର ଦୃଷ୍ଟାନ୍ତ ଅଛି ।

୧୯୨୧ ମସିହାରେ କୁନ୍ତଳାକୁମାରୀ ଚିକିତ୍ସାକୁ ମୁଖ୍ୟ ଜୀବିକା ରୂପେ ଗ୍ରହଣ କରିଥିଲେ । ସେଥିପାଇଁ ତାଙ୍କୁ ସକାଳେ ଓ ସନ୍ଧ୍ୟାରେ ଦୁଇ ଦୁଇ ଘଣ୍ଟା ସମୟ ଦେବାକୁ ପଡ଼ୁଥିଲା । ଫଳରେ ତାଙ୍କର ସାହିତ୍ୟ ସାଧନାରେ ବ୍ୟାଘାତ ସୃଷ୍ଟି ହେଉଥିଲା । ମାତ୍ର ଚିକିତ୍ସାରେ ନିୟୋଜିତ ଥିବାରୁ ସେ ବହୁତ ସୁବିଧା ପାଉଥିଲେ । ତେଣୁ ତାହା ସେ ଛାଡ଼ି ପାରୁ ନଥିଲେ । ଅପରପକ୍ଷେ ସାହିତ୍ୟ ଚର୍ଚ୍ଚା କରୁଥିବାରୁ ତାଙ୍କୁ ସମୟର ଘୋର ଅଭାବ ଅନୁଭୂତ ହେଉଥିଲା । ମାତ୍ର ସାହିତ୍ୟ ସାଧନା ଯୋଗୁଁ ତାଙ୍କର ଯଶ ବଢ଼ି ଚାଲିଥିଲା । ସମାଜରେ ସେ ପୂଜିତା ହେଉଥିଲେ । ତେଣୁ କବି ହେବାର ଲାଳସା ତାଙ୍କୁ ପ୍ରତିକ୍ଷଣରେ ବ୍ୟଥିତ କରୁଥିଲା । ସେଥିପାଇଁ କେଉଁ ଗୋଟିକୁ ସେ ଛାଡ଼ି ପାରୁ ନଥିଲେ । ଦିନରାତି ଚବିଶ ଘଣ୍ଟାର ଗୋଟାଏ ମିନିଟ୍ ବୃଥାରେ ନଷ୍ଟ ହେଲେ ସେ ସେଥିପାଇଁ ବ୍ୟଥିତ ହେଉଥିଲେ । ପ୍ରେସଟିଏ କରି ଓଡ଼ିଆ ଜାତିର ହିତ ସାଧନ କରିବା ତାଙ୍କର ଲକ୍ଷ୍ୟ ଥିଲା ।

କୁନ୍ତଳାକୁମାରୀ ନିଜ ଦେଶକୁ ପ୍ରାଣଭରି ଭଲ ପାଉଥିଲେ । ଭାରତର ଜାତୀୟ ସଂଗ୍ରାମରେ ସେ ପ୍ରତ୍ୟକ୍ଷ ଭାବେ ଯୋଗ ନ ଦେଇଥିଲେ ମଧ୍ୟ ଜାତୀୟ ଚେତନା ଭାବରେ କେତେକ ଜାତୀୟ କବିତା ଲେଖି ଅସଂଖ୍ୟ ଯୁବକଙ୍କ ପ୍ରାଣରେ ଉନ୍ମାଦନା ସୃଷ୍ଟି କରିଥିଲେ ।

୧୯୨୪ ଖ୍ରୀଷ୍ଟାବ୍ଦରେ ଆଚାର୍ଯ୍ୟ ପ୍ରଫୁଲ୍ଲ ଚନ୍ଦ୍ର ରାୟଙ୍କ ସଭାପତିତ୍ୱରେ ଉତ୍କଳ ସମ୍ମିଳନୀର ଏକ ଅଧିବେଶନ ଦେଶମିଶ୍ରଣ ଘେନ କଟକରେ ହୋଇଥିଲା । ଏହି ସମ୍ମିଳନୀରେ କୁନ୍ତଳାକୁମାରୀଙ୍କ ରଚିତ ଏକ ସଙ୍ଗୀତ ମହାସମାରୋହରେ ଗାନ କରାଯାଇଥିଲା—

"କୋଟିକୀର୍ତ୍ତି ମୁକ୍ତା-ମାଳିନୀ
କାନ୍ତ-କମଳା କଳାକୁଶଳା ଶାନ୍ତଶାଳିନୀ

॥ ୧ ॥

କୋଟିସୁତ ସ୍ନେହଶୀଳା
କୋଟିତୀର୍ଥ ସ୍ୱର୍ଗଲୀଳା
ରତ୍ନାକର ତଟୋଚ୍ଛଳା
ସିନ୍ଧୁ ଧୌତ ପୁଣ୍ୟବେଳା
ନୀଳାଚଳ-ଚିଲିକା-ପ୍ଲାବିନୀ
ଶକ୍ତି, ମୁକ୍ତି ଭକ୍ତିମନେ ଭକ୍ତପାଳିନୀ ।

॥ ୨ ॥

ତାଳ ତମାଳ ତାଳୀମାଳା
ଶତ ତଟିନୀ ପୂତ ସଲିଳା
କାବ୍ୟକୁଞ୍ଜ କଳ କୋକିଳା
ପୂଜିତ ପାଦ ଭଞ୍ଜ ସାରଳା
ଶୁଭଗୀତ ସୁଧା ସ୍ୟନ୍ଦିନୀ
ବିଶ୍ୱବନ୍ଦନ ଚିତ୍ତନନ୍ଦନ ନୟନହ୍ଲାଦିନୀ ।

॥ ୩ ॥

ବିଶାଳ ଶୈଳ ବିପିନମାଳୀ
କେଦାର କାନ୍ତ ପକ୍ୱଶାଳୀ
କାନନ ଫୁଲ୍ଲ ପ୍ରସୂନାଞ୍ଜନ
ହୃଷ୍ଟ ପକ୍ଷୀ କଳ କାକଳୀ
ରତ୍ନଜ୍ୟୋତି ଉଜ୍ଜ୍ୱଳ କାନନୀ
ଚୂଆଚନ୍ଦନ କର୍ପୂର ମୃଗମଦମୋହିନୀ ।

ଅନଙ୍ଗ ଯଯାତି ବୀର ଜନନୀ
ବୀରରୁଧିର ସିକ୍ତ ଅବନୀ
ବିଦ୍ୟାଧର୍ମ ମୋକ୍ଷ, ମେଦିନୀ
ଶୂଦ୍ର ବ୍ରାହ୍ମଣେ ସାମ୍ୟବାହିନୀ
ଜାତିଭେଦ ବନ୍ଧ ଭଞ୍ଜିନୀ
ନିଖିଳ ଭାରତ ଭକତ ଚରଣ ରେଣୁରଞ୍ଜିନୀ !

|| ୫ ||

ଜୟ ଜୟ ବୀର ବରେଣ୍ୟେ
ଜୟ ଭକତ ଚିତ୍ତ ଶରଣ୍ୟେ
ଜୟ ଧନ୍ୟେ ! ଜୟ ପୁଣ୍ୟେ !
କୋଟି ସନ୍ତାନ ଅନ୍ନପୂର୍ଣ୍ଣେ
ସର୍ବଶୁଭ ଶାନ୍ତିଦାୟିନୀ
ଚିତ୍ତ କାମନା କଳିତ ଲଳିତ ଚରଣ ନଳିନୀ ।"

ଉତ୍କଳର ଅତୀତ ଗୌରବ ତଥା ଯଶକୀର୍ତ୍ତିରେ ବିମୋହିତା ହେଲେ କୁନ୍ତଳାକୁମାରୀ । ଉକ୍ତ କବିତାଟି ରଚନା କରି ଶତ ଶତ ଉତ୍କଳୀୟଙ୍କ ପ୍ରାଣରେ ଉନ୍ମାଦନା ଆଣିଥିଲେ । କୁନ୍ତଳାକୁମାରୀ ସ୍ୱାଧୀନ-ଚେତା ଥିଲେ । ସ୍ୱାଧୀନତା ପାଇଁ ସେ ନିଜେ ପାଗଳ ହେବା ସଙ୍ଗେ ସଙ୍ଗେ ଜାତୀୟ ସଂଗ୍ରାମରେ ଯୋଗ ଦେଇ ଭାରତ ଜନନୀଙ୍କୁ ମୁକ୍ତ କରିବା ପାଇଁ ସେ ସମଗ୍ର ଓଡ଼ିଶାବାସୀଙ୍କୁ ପ୍ରେରଣା ଦେଇଥିଲେ । ବିଦେଶୀମାନଙ୍କ ଦାସତ୍ୱରୁ ମୁକ୍ତହୋଇ ସମ୍ପୂର୍ଣ୍ଣ ସ୍ୱଦେଶୀ ହେବାପାଇଁ ସେ ଓଡ଼ିଆ ଜାତିକୁ ଆହ୍ୱାନ ଦେଇଥିଲେ । କୁନ୍ତଳାକୁମାରୀଙ୍କ ଲିଖିତ ଏକ ପତ୍ରରୁ ଏହାର ସତ୍ୟତା ହୃଦୟଙ୍ଗମ କରିହୁଏ । "ମୁଁ ସ୍ୱାଧୀନତା ପାଇଁ ପାଗଳ । × × × ମନରେ ଯାହା ନ୍ୟାୟବୋଲି ଜାଣୁ ତାହା ଆମେ କରୁନାହୁଁ । ଗୋଲାମୀ କରି କରି ସରିଗଲୁଣି । କେବେ ବନ୍ଧନ ମୁକ୍ତ ହେବା ? ଗୋଲାମୀ ବୋଲିଲେ ଶୃଙ୍ଖଳର ଦାସତ୍ୱ, ଅର୍ଥ ହୀନତାର ଦାରୁଣ ଭୟ—ଏସବୁ ଦ୍ୱାରା ଆମମାନଙ୍କର ଜୀବନ କ୍ଷୁଦ୍ର କୂପ ମଣ୍ଡୂକରେ ପରିଣତ ହୋଇ ରହିଛି । ତୁମେ ଏ ସମସ୍ୟାଗୁଡ଼ା ଭଲରୂପେ ବୁଝିବ । ଦେଶର ଜାତିର କଲ୍ୟାଣ ଆମ ପରି ବ୍ୟକ୍ତିମାନଙ୍କର ନିର୍ଭୀକ

ସାହସର ଆଦର୍ଶ ସିନା ! ଆମେ ତ' ଖାରୁ, ଲକ୍ଷ୍ୟହୀନ—ଦେଶଟା ଉଠିବ କେମିତି ? ମୁଁ ସ୍ୱାଧୀନତା ଲାଗି ପାଗଳ । ଚାଲକର, ଛାଡ଼ଦେଇ । ମନୋମତ ଶାନ୍ତିମୂଳକ ସଂଗ୍ରାମରେ ଯୋଗଦେଇ ମୋ ଭିତରେ ସାହା ଅଛି ତାହା ପଦାକୁ କାଢ଼ିବ । ଆମେ ଯେପରି ପୂର୍ଣ୍ଣସ୍ୱାଧୀନ, ସ୍ୱାବଲମ୍ବୀ, ବ୍ୟବସାୟୀ, ନିର୍ଭୀକ, ପୂର୍ଣ୍ଣ ସ୍ୱଦେଶୀ ହେବା—ଚାଲ, ବ୍ରତଗ୍ରହଣ କରି ଭଗବାନଙ୍କ ପାଖରେ ଶପଥ କରିବା । କାଳେ ଭୁଲିଯିବା, ସେଥିପାଇଁ ଉପାସନା କରି ଏ ବ୍ରତ ଧାରଣ କରିବା ।

ଆଜଠୁ ପାଞ୍ଚବର୍ଷ ଭିତରେ ପୂର୍ଣ୍ଣ ସ୍ୱାବଲମ୍ବୀ ସ୍ୱାଧୀନ ବ୍ୟବସାୟୀ-ଶୀଳ ଏବଂ ପୂର୍ଣ୍ଣ ସ୍ୱଦେଶୀ ହେବା । ଜାଣିଶୁଣି ପଦା ନୋହିଲେ ନଚଳେ ତା' ଛଡ଼ା ଅନ୍ୟ ବିଦେଶୀ ଦ୍ରବ୍ୟ ବଜାରରୁ କିଣିବା ନାହିଁ । ଅଧିକାଂଶ ଖଦଡ଼ ପିନ୍ଧିବା । ସୂକ୍ଷ୍ମବସ୍ତ୍ର ଲାଗି ଦେଶୀ ସିଲକ ବା ରେଶମ ଆଦି ବ୍ୟବହାର କରିବା ଏବଂ କିଛି କିଛି ସ୍ୱଦେଶୀ ଓ ମିଲ୍ ଲୁଗା ଖୋଜିବା, ତେବେ କଷ୍ଟଟା ଜଣା ପଡ଼ିବ । କାରଣ ଭାରତର ୬ କୋଟି ଟଙ୍କାର ଲୁଗା ଦରକାର ସ୍ଥଳେ ମାତ୍ର ଅଧକୋଟି ଖଦଡ଼ ଉତ୍ପନ୍ନ ହୁଏ । ତେବେ କଳକନା ବ୍ୟବହାର ମନ୍ଦ କଣ ? ଦେଶର ଧନ ଦେଶରେ ରହୁ । ବଜାରକୁ ଗଲେ ଦେଶୀ ସାବୁନ, ଛତାସିଲ, ସୂତା, ଚିନି ଇତ୍ୟାଦି ଟିକେ ଅଧିକ ଦେଶୀ ମୂଲ୍ୟରେ କିଣିବା, କେବଳ କେତୋଟି ନାହିଁ ନୋହିଲେ ପଦାର୍ଥ ମାତ୍ର ବୈଦେଶିକ ଥିବ । ସମଗ୍ର ଦେଶ ବିଦେଶୀ ବର୍ଜନରେ ବଦ୍ଧପରିକର । ଆମେ ତ ଖାଲି ସ୍ୱଦେଶୀ, ଆମେ ମନ୍ଥିଲିବା କଥାଁ ? ଭାରତର କଲ୍ୟାଣ ଲାଗି ମୁଁ ସଂକ୍ଷେପରେ ଯାହା ଯାହା ଭାବୁଛି, ତୁମକୁ କହିରଖେ । ଭାରତ ୟୁରୋପ ପରି ଏକ ମହାଜାତୀୟ ଅଥଚ ବିଭିନ୍ନ ପ୍ରାଦେଶିକ ଭାଷାଭାଷୀ ଦେଶ । ଯାହାର ଉନ୍ନତି ଲାଗି ମୁଁ ଚାହେଁ । ୧—ଆମର ସବଶାଳ ଜାତୀୟ ଐକ୍ୟ । ସ୍ୱଧର୍ମର ପାଳନ । ଖ୍ରୀଷ୍ଟିୟାନ, ପଠାଣ, ବ୍ରାହ୍ମଣ ଆଦି ପାଶ୍ଚାତ୍ୟ ଜାତି ପ୍ରଭାବରୁ ମୁକ୍ତ । ହିନ୍ଦୁର ଆଚାର ବ୍ୟବହାରର ସଂସ୍କାର ।

୨—ବିରାଟ ଗଣତନ୍ତ୍ର ଶାସନ । ତା' ଲାଗି ରାଷ୍ଟ୍ରୀୟ ହିନ୍ଦିଭାଷୀ ହିନ୍ଦୁଧର୍ମଘଟିତ ଆଇନ କାନୁନ୍ ହିନ୍ଦୁସ୍ଥାନ ହିନ୍ଦୁର ଦେଶ । ଅନ୍ୟର ସେଠି ଅଧିକାର । ମୁଁ ହିନ୍ଦୀରେ ପାରଦର୍ଶୀ ହେବ । ତୁମେ ଇଂରେଜୀ ଓ ହିନ୍ଦୀରେ ଦକ୍ଷ ହୁଅ । ଆମେ ଉତ୍କଳରେ ହିନ୍ଦୀର ସ୍ରୋତ ବୁହାଇବା ।

ଇଂରେଜୀ ପରିବର୍ତ୍ତେ ସର୍ବତ୍ର ହିନ୍ଦୀର ପ୍ରାଧାନ୍ୟ ଖୋଜିବା । ଗାନ୍ଧି ଆମରି ନମସ୍ୟ ହେବତା । ଦିନ ଆସିବ, ଆମେ ସମସ୍ତେ ଏକାଠି ହେବା । ଦେଶନେତା ଓ ଦେଶକର୍ମୀ ହେବା । (କୁନ୍ତଳାକୁମାରୀ ଜୀବନ ଚରିତ ପୃ-୨୨୭-୨୨୯)

ଏଥିରୁ କୁନ୍ତଳାଙ୍କ ଦେଶପ୍ରୀତି କେତେ ଗଭୀର ଥିଲା ତାର ପରିଚୟ ମିଳେ । ଜାତୀୟ ମହାସ୍ରୋତରେ ଭାସି ନଗଲେ କୌଣସି ବ୍ୟକ୍ତି ପକ୍ଷରେ ଏଭଳି କଳ୍ପନା କରିବା ବା କଳ୍ପନାକୁ ରୂପରେଖ ଦେବା ସମ୍ଭବ ନୁହେଁ । କୁନ୍ତଳାକୁମାରୀ ନିଜ ବାକ୍ୟ ମୁତାବକ ଆଜୀବନ ଖଦଡ଼ ବସ୍ତ୍ର ପରିଧାନ କରୁଥିଲେ ।

ନିଦ୍ରିତ ଓଡ଼ିଆମାନଙ୍କୁ ସେମାନଙ୍କର ଜଡ଼ତା ଭଙ୍ଗକରି ଜାଗ୍ରତ ହେବାକୁ ଆହ୍ୱାନ ଦେଇ ଗାଇଥିଲେ—

"ଓଡ଼ିଆ ଏଥର ମଣିଷ ହୁଅ
ସନ୍ତୁଳଣି ବନ୍ଧୁ କଷଣ ବିପତ୍ତି
ନିଜ ଗୋଡ଼େ ଏବେ ଛିଡ଼ାହୁଅ ।

ଜାତିର କଳଙ୍କ ନିଜ ଗୁଣ ଜନେ
ଯତନରେ ତାକୁ ମାଜ ଧୁଅ ।
ହୀନ ନୁହଁ ତୁମେ ହୀନ ନୁହଁ
ତେତିଶ କୋଟିରେ ଏକକୋଟି ବୋଲି
ଆଉ ନ ଗଡ଼ାଅ ନିରାଶା ଲୁହ !
ଅଳସୁଆ ବୋଲି ଅନ୍ଧାର କୁଢ଼ିଆ
କୋଣକୁ ଆବୋରି ଆଉ ନ ଶୁଅ ।

ମନୋବଳେ ସିନା ମଣିଷପଣିଆ
ମନେ ଆଣ୍ଟିବାନ୍ଧି ଦମ୍ଭେ ହୁଅ ଠିଆ
ଗରବରେ କହ ମୁଁ ...ଠାଣ ଓଡ଼ିଆ
ମହାନଦୀର ମୁଁ ପ୍ରବଳ ସୁଅ ।
କୋଣାର୍କଶିଳା ନୀଳାଚଳ ଲୀଳା
ପଥର ଦେହରେ କୀରତି ଥୁଆ ।

କାହାକୁ ଭୟରେ କାହାକୁ ଭୟ
ମନୋବଳକୁ କେ କରବ ଜୟ
ଡାନାକନା ସବୁ ଅସିବ ଅଜାଡ଼ି
ଆତ୍ମବଳେ ପଥ ରଖିବ ଲୟ ।

× × ×

ମଣିଷ, ଆମର କି ଲାଜ କି ଭୟ
ଜୟ କପାଳରେ ଅଛି ସୁନିଶ୍ଚୟ
ମଣିଷ ଆମେରେ କୋଟିଏ ଓଡ଼ିଆ
ନୋହୁ ଜଗତର ଜଞ୍ଜାଳ ଅଳିଆ,
ଅଛିରେ ଅଛିରେ ତେଜ ଆମ ମନେ
ଦୁଃଖ ନାହିଁ ଆଜ ନସ୍ତୁର ପତନେ

ଉଠିବୁ ଏଥର ଉଠିବୁ ମୁକର
କହ କହ ଆଜ ହୋଇ ସମସ୍ୱର ।

ଗାଅ ଘରେ ଘରେ ସ୍ୱାଧୀନତା ଗୀତ
ସ୍ୱାବଲମ୍ବନରେ ମଜ୍ଜିଯାଉ ଚିତ୍ତ
ଗଣ୍ଡଗୋଳ ତବ କରବ ଏପରି
ନାହିଁ ରହ ତଳେ ଶକତି କେଶରୀ,

ଉଠରେ ଓଡ଼ିଆ ହୁଅରେ ମଣିଷ
ମଣିଷ ମୁଣ୍ଡରେ ବର୍ଷିବ ଆଶିଷ
ମଣିଷ ହୃଦାବେ ପୂଜାପାଅ ଭବେ
ନାଶ ଉଠୁ ରକ୍ତ ମଣିଷ ଗରବେ,
ଆସିବରେ ଫେରି ଯା ଯାଇଛି ତବ
ଅଧିକୁଁ ଅଧିକ ବଢ଼ିବ ବଭବ
ଓଡ଼ିଆ ଏଥର ମଣିଷ ହୁଅରେ
ଓଡ଼ିଆ ନାମର କାଳିମା ଧୁଅରେ ।"

ଏହି ଜାଗୃତି-ମନ୍ତ୍ରର ଉଦ୍‌ଗାତା ବିପ୍ଳବୀ ନାୟକଙ୍କ କୁନ୍ତଳା-କୁମାରୀଙ୍କ ଗଭୀର ସ୍ୱଦେଶୀଚିନ୍ତା ଏଥିରୁ ସହଜରେ ଅନୁମେୟ ।

୧୯୩୬ ମସିହାରେ ନବୋତ୍କଳ ଗଠନ ହୋଇଥିଲା । ଏହି ସମ୍ବାଦ ପାଇବାମାତ୍ରେ କୁନ୍ତଳାକୁମାରୀ ଆନନ୍ଦରେ ବିହ୍ୱଳ ହେବା ସଙ୍ଗେ ସଙ୍ଗେ ଉତ୍କଳର ଆଉ କେତେକ ଅଙ୍ଗ ନିମିତ୍ତ ଦୁଃଖପ୍ରକାଶ କରି ସେ ଉଲ୍ଲାପ ଚିଠି ଶିରୋନାମାରେ ଲେଖିଥିଲେ "ଆଜି ଆମେ ଆନନ୍ଦ କରୁଛୁ, କିନ୍ତୁ ପ୍ରକୃତରେ କଣ ଆମେ ପୂର୍ଣ୍ଣାନନ୍ଦର ଅଧିକାରୀ ? ଆମେ ସେ ପାଇ ସୁଦ୍ଧା ପାରିନାହୁଁ । ଆଜି ମଧ୍ୟ ଆମ ସିଂହଭୂମି, ଆମ ଖଡ୍ଗପୁର, ମେଦିନୀପୁର, ଆମ ଜଗନ୍ନାଥ-ମୋହନଙ୍କ ମଞ୍ଜୁଷା, ନିର୍ମଳା ତରଳା, ପାରଳାର ଅର୍ଦ୍ଧ ଭାଗ ଆଦି ଅନେକ ଭୂଭାଗ ଆମର ଉତ୍କଳମା କଳିଙ୍ଗର କଳେବରକାନ୍ତ ତନୁରୁ କଟାହୋଇ ରହିଛି । ବିରାଟ କଳିଙ୍ଗ ବୃହତ୍ତର ଉତ୍କଳର ସ୍ୱପ୍ନ ସେ ପୂର୍ଣ୍ଣଭାବରେ ସଫଳ ହେଲା ନାହିଁ । ପ୍ରାଙ୍ଗଣରେ ପରମାତ୍ମୀୟଙ୍କ ଅନୁପସ୍ଥିତିର ବିଚ୍ଛେଦ ଆମ ପ୍ରାଣକୁ ଯେ ଘାରି ରଖିଲା । ଆମେ ପୂର୍ଣ୍ଣଭାବରେ କିପରି ବା ଆନନ୍ଦ କରିବୁ ।

ଆଜି ଆନନ୍ଦ ଦିନରେ ଅଶ୍ରୁସିକ୍ତ ଆଖି ଯେ ଅନେଇ ପାରୁନାହିଁ । ମା'ର ପୂଜା ପୂର୍ଣ୍ଣୋପଚାରରେ କିପରି କରିବୁ ? କିନ୍ତୁ ଭାଇ ପାଇଚୁ ତ । କିଛି ତ ପାଇଚୁ । ଏତିକିଟା ପାଇଚୁ ଯେତେବେଳେ ଆଉ ଯେତକ ବାକି ଅଛି, ସେସବୁ ଦିନେ ନିଶ୍ଚେ ମିଳିଯିବ ଆମ ହୃଦୟର ଆକର୍ଷଣରେ । ଆମେ ଯେ ପରସ୍ପରର କେତେ ନିକଟ । ଆମ ଓଡ଼ିଆ ଜାତି ଭିତରେ ଗୋଟିଏ ବିରାଟ ଜାତୀୟତା, ଗୋଟିଏ ଅଖଣ୍ଡ ଏକତା ଅଛି । ଆମେ ଯେ ଖାରଶ୍ରୀ ଖାରବେଳର ବଂଶଧର । ପ୍ରତ୍ୟେକ ଓଡ଼ିଆ ଭାଇ ଭଉଣୀ ନିଜକୁ ଏହି ଖାରଶ୍ରୀ ଉପାଧିରେ ଭୂଷିତ କରନ୍ତୁ । ଆଉ ଆମେ ଦୁର୍ବଳ ଭୀତ କମ୍ପିତ ନୋହୁଁ; ଆମର ଅତୀତ ଥିଲା—ଭବିଷ୍ୟତ ଅଛି । ଜାତୀୟ ନବବର୍ଷର ପ୍ରଥମ ଦିନରେ, ଶୁଭତର, ପ୍ରଥମ ମୁହୂର୍ତ୍ତରେ ଏହି ପବିତ୍ରନାମ ଆମର ଜାତୀୟତାର, ଜାତୀୟତାର ମହାନ ଚିହ୍ନ, ପବିତ୍ର କଳିଙ୍ଗମାତା ଉତ୍କଳ-ଜନନୀର ଚରଣ ପୂଜା କରି ମୁଁ ଗ୍ରହଣ କରିଛି ଏବଂ ପ୍ରତ୍ୟେକ ଉତ୍କଳୀୟ ଭାଇ ଭଉଣୀଙ୍କୁ ଏହି "ଖାରଶ୍ରୀ" ଉପାଧି ଗ୍ରହଣ ଲାଗି ଉଦ୍‌ବୋଧିତ କରୁଛି । X X X

ନାମରେ ଶକ୍ତି ଅଛି । 'ଖାର' ନାମରେ କେତେ ମହାନ୍ ଶକ୍ତି, କି ସୁମହାନ୍ ପ୍ରେରଣା, ନିଖିଳ କଳିଙ୍ଗର ଭାଇ ଭଉଣୀ ! ଏହା କ'ଣ ତୁମକୁ

କିଏ ଦେବାକୁ ହେବ ? ଏହି ନାମ ବଳରେ ହି ମନୁଷ୍ୟ ଅସାଧ୍ୟ ସାଧନ କରିପାରେ । ଏହି ବୀରନାମ ଯେଉଁ ବୀରବ୍ରତରେ ବ୍ରତୀହୋଇ ବୀରଶ୍ରୀ ଦେଶର ବୀର ସନ୍ତାନରୂପେ ଯୁଗେ ଯୁଗେ ଜଗତରେ ନିଜ ଜାତୀୟତା ଓ ରାଷ୍ଟ୍ରୀୟତାର ବିଜୟବାନା ଟେକି ଧରୁ, ଦେଶର ମହାମଙ୍ଗଳ-ମିଳନରେ ପର୍ବ ମୁହୂର୍ତ୍ତରେ ମୋର ଏହି ଶୁଭକାମନା ।" ( ଚନ୍ଦ୍ରଧର ମହାପାତ୍ର-କୁନ୍ତଳାକୁମାରୀ ଗ୍ରନ୍ଥମାଳା )

ଜାତିଗତପ୍ରାଣା କୁନ୍ତଳାକୁମାରୀଙ୍କର ନିଃସ୍ୱାର୍ଥପର ଦେଶପ୍ରେମ ଏଥିରୁ ସ୍ପଷ୍ଟ ପ୍ରତିପାଦିତ ହୁଏ । ସ୍ୱାବଲମ୍ବୀ ହୋଇ ଓଡ଼ିଶାର ହୃତ ଗୌରବକୁ ଫେରେଇ ଆଣିବା ସଙ୍ଗେ ସଙ୍ଗେ ନବ ଉତ୍କଳ ଗଠନ ଦିଗରେ ପ୍ରତ୍ୟେକ ଓଡ଼ିଆର କିଛି ନା କିଛି କର୍ତ୍ତବ୍ୟ ଅଛି, ଏହା ସେ ସୂଚେଇ ଦେଇଥିଲେ ।

ସ୍ୱାମୀ ବିବେକାନନ୍ଦଙ୍କୁ ସେ ଗୁରୁଭାବେ ମାନୁଥିଲେ । ବିବେକାନନ୍ଦଙ୍କର ଉକ୍ତି—"ସଂସାରକୁ ଆସିଛ, ପଦଚିହ୍ନ ରଖିଯାଅ, ତୁମ ପରି କେତେ ଆସିବେ, କେତେ ଯିବେ, ଏହି ବିଳାସ, ଏହି କୋଠା ବାଡ଼ି, ଏହି ଖାଦ୍ୟ ଭୋଜନ, ସବୁ ବିସ୍ମୃତିଗର୍ଭରେ ଲୀନ ହୋଇଯିବ ।"

ପାଣିରେ ପଦଚିହ୍ନ ମୁହୂର୍ତ୍ତେ । ବାଲି ଉପରେ ପାଦଚିହ୍ନ ମଧ୍ୟ କେତେ ଦଣ୍ଡ, କିନ୍ତୁ ଶିଳାଚିହ୍ନିତ ପଦଚିହ୍ନ ହିଁ ରହିବ କାଳ କାଳ, ଜ୍ୟୋତିଷମାନଙ୍କ ମତରେ କୁନ୍ତଳାକୁମାରୀ ମଧ୍ୟାୟୁ ଥିଲେ । ସୁତରାଂ ସ୍ୱାମୀ ବିବେକାନନ୍ଦଙ୍କ ବାଣୀରେ ଉଦ୍‌ବୁଦ୍ଧ ହୋଇ ସେ ସଂସାରରେ ନିଜର କୀର୍ତ୍ତି ପ୍ରଖ୍ୟାପନ ନିମିତ୍ତ ସାହିତ୍ୟ ସାଧନାରେ ବ୍ରତୀ ହୋଇଥିଲେ ।

କୁନ୍ତଳାକୁମାରୀ ଜନ୍ମରୁ ଖ୍ରୀଷ୍ଟିୟାନ ଥିଲେ । ମାତ୍ର ସବୁ ଧର୍ମକୁ ସେ ସମାନ ଦୃଷ୍ଟିରେ ଦେଖୁଥିଲେ । ଖ୍ରୀଷ୍ଟିୟାନ ଧର୍ମ ପ୍ରତି ହିନ୍ଦୁମାନଙ୍କର ସେତେବେଳେ ଏକ ବିଦ୍ୱେଷ ମନୋଭାବ ଥିଲା । ଛୁଆଁ ଛୁଇଁ ବିଶେଷରେ ପୂଜାବ୍ରତ ଇତ୍ୟାଦିରେ ସେମାନଙ୍କୁ ଗୃହମଧ୍ୟକୁ ନେବାରେ ଏକ ଘୃଣାଭାବ ଥିଲା । ଖ୍ରୀଷ୍ଟିୟାନ କହିଲେ ଜାତିଗଲା ବୋଲି ଲୋକଙ୍କର ଧାରଣା ଥିଲା । ହିନ୍ଦୁମାନେ ସେମାନଙ୍କୁ ହେୟ ଦୃଷ୍ଟିରେ ଦେଖୁଥିଲେ ଓ ସେମାନଙ୍କଠାରୁ

ଦୂରରେ ରହୁଥିଲେ । କାରଣ ସେ ସମୟରେ ଖ୍ରୀଷ୍ଟିୟାନ ପାଦ୍ରୀ ବୃନ୍ଦ-ମାନଙ୍କୁ ଧମକାଇ ଜବରଦସ୍ତ ଖ୍ରୀଷ୍ଟିୟାନ ଧର୍ମରେ ଦୀକ୍ଷିତ କରାଇ ଦେଉଥିଲେ । ଏହି ସମ୍ପର୍କରେ କୁନ୍ତଳାକୁମାରୀ ଲେଖିଛନ୍ତି—"ମୋର ସାଆନ୍ତ ବାପାଙ୍କୁ ଶିଶୁ ସମୟରେ ପାଦ୍ରୀ ଧମକାଇ ଯେପରି ଖ୍ରୀଷ୍ଟିୟାନ କରି ଦେଇଥିଲ ତାହା ମୁଁ ସାଆନ୍ତବାପାଙ୍କଠାରୁ ଶୁଣିଥିଲି । ଖ୍ରୀଷ୍ଟିୟାନ ଧର୍ମ ସମ୍ବନ୍ଧରେ ମୋର କୌଣସି ବିରୁଦ୍ଧ ମତ ନାହିଁ । ମୁଁ ଖ୍ରୀଷ୍ଟଙ୍କର ଜୀବନଦାନକୁ ବିଶ୍ୱର ଏକ ମହାମହୀୟ ଘଟଣା ବୋଲି ଭାବେ । ସେ ଜଣେ ମହାନ୍ ଋଷି ଥିଲେ । ମାନବ ଜାତିର ହିତାର୍ଥେ ଇତିହାସରେ ତାଙ୍କପରି ଆଉ କିଏ ଏପରି ଜୀବନବଳି ବା ଦେଇଛନ୍ତି ? ମୁଁ ତାଙ୍କ କଥା ଭାବି ବହୁ ଦିନରାତି କାନ୍ଦିଛି । ସାନ୍ତ୍ୱନା ମୋତେ ମିଳିନାହିଁ । ତାଙ୍କ ନାମରେ ଯେଉଁ ଧର୍ମ ତାଙ୍କ ପରେ ପ୍ରଚ୍ଛଳିତ ହୋଇ ଷୋଳଶି କୋଟି ନରନାରୀ ମଧ୍ୟରେ ଯେ ପ୍ରଭାବିତ ହୋଇପାରିଛି, ତାହାହିଁ ତାଙ୍କ ଆତ୍ମତ୍ୟାଗ ଏବଂ ତାଙ୍କର କରୁଣ ମୃତ୍ୟୁରେ ଅସ୍ଥିର ମଣିଷମାନଙ୍କର ଚରମ ଶ୍ରଦ୍ଧାଞ୍ଜଳି ମାତ୍ର । କିନ୍ତୁ ତାଙ୍କ ନାମରେ ଯେଉଁ ପୌରୋହିତ୍ୟ ଯାଜକମାନଙ୍କର ପାଶବିକ ଜନସମାଜକୁ ବାଧ୍ୟକରି ଅଥବା ଶାମ ଦାନ ଭେଦରେ ଆପ୍ୟାୟିତ କରି ଧର୍ମର ଏକ ପୋଷାକ ପିନ୍ଧାଉଛନ୍ତି—ସେଥିରେ ବରେଣ୍ୟ ଯୀଶୁ ପଦେ ପଦେ ଲାଞ୍ଛିତ ହେଉ ନାହାନ୍ତି କି ?

ଅନ୍ୟ ଧର୍ମର ନିନ୍ଦାଗାଇ ତାଙ୍କ ଧର୍ମକୁ ପୃଥିବୀବ୍ୟାପୀ କରିବାକୁ ସେ କହିଯାଇ ନଥିଲେ । ଚକ୍ରଧର ! ତୁମେ ଶୁଣିଲେ ଆଶ୍ଚର୍ଯ୍ୟ ହେବ, ମୋର ପୂଜ୍ୟ ପିତୃଦେବ ସର୍ବଦା କହୁଥା'ନ୍ତି, "ଖ୍ରୀଷ୍ଟଙ୍କ ଜୀବନଗାଥା ଅଧ୍ୟୟନ କରି ଯେବେ କେହି ନ କାନ୍ଦିଲା ବା ତାଙ୍କର ମାତା ପ୍ରତି ଆକୁଳ ଆବେଦନ ନ ଡାକିଲା, ତେବେ ଏ ପ୍ରକାର ଧାର୍ମିକ ସୃଷ୍ଟି ସଙ୍ଗଠନ, କ୍ଷମତା ଷଡ଼ଯନ୍ତ୍ର କୂଟମାନଙ୍କର ଜନ୍ମ ଥିବା ଯାଏ ହିଁ ଥିବ । ବିଶେଷରେ, ଶିକ୍ଷା ଯେତେବେଳେ ବୈଜ୍ଞାନିକ ହୋଇଯିବ ଏବଂ ଶିକ୍ଷିତ ସଂଖ୍ୟା ବିଶ୍ୱର ପ୍ରତିକୋଣେ ପୂରି ଉଠିବ ସେତେବେଳେ କୌଣସି ଧର୍ମ ତ ରହିବ ନାହିଁ । ପୁନଶ୍ଚ ବହୁ ଧର୍ମର ଅନୁଦାରତା ଯୋଗୁଁ ବିନାଶ ଆପେ ଘଟିଯିବ ।"

× × ×

"ମୁଁ ଖ୍ରୀଷ୍ଟିୟାନ ଘରେ ଜନ୍ମିଛି ସତ । କିନ୍ତୁ ମୁଁ ଭାରତୀୟ । ଭାରତବର୍ଷର ଇତିହାସ ପୁରାଣ ତ୍ୱମାର ନ ହୋଇ ତା' ସ୍ଥାନରେ ମୋର

ହେବ ପାଶ୍ଚାତ୍ୟ ଇତିହାସ, ପୁରାଣ, ଏହା କଦାପି ମୁଁ ଶୈଶବରୁ ଭାବିପାରୁ ନଥିଲି । ମୋ ଭାଇମାନଙ୍କ ନାମ ଯେ ସାମୁଏଲ, ନଏନଏଲ ଇଥିଆଗଲ, ମୁଁ ଜ୍ଞାନହେବା ପରେ ତାହାକୁ ସମର୍ଥନ କରିପାରି ନଥିଲି ।

"ଭାରତୀୟ ଜୀବନ ଚରିତଗୁଡ଼ିକୁ ମୁଁ ଯେ ଉପାଦେୟ ମନେ କରିଚି ତା' ମୂଳରେ ମୋ' ସାଆନ୍ତ ମା' ଏବଂ ସାଆନ୍ତ ବାପାଙ୍କ ପ୍ରଭାବ । ଏଥିପାଇଁ ମୋର ମାଆ ମୋତେ ଗାଳିମନ୍ଦ କରିଛନ୍ତି, କିନ୍ତୁ ମୁଁ କି ଶୁଣେ ? ଇତ୍ୟାଦି" (କୁନ୍ତଳାକୁମାରୀ ଜୀବନ ଚରିତ ପୃ-୨୮-୩୦) ।

ଏଥିରୁ କୁନ୍ତଳାକୁମାରୀ ଭାରତର ମାଟି ତା'ର ପାଣିପବନ ସର୍ବୋପରି ତା'ର ଜୀବନ ନାଟିକାକୁ କିପରି ଅନ୍ତରର ସହିତ ଭଲ ପାଉଥିଲେ ତା'ର ଦୃଷ୍ଟାନ୍ତ ମିଳେ । କେବଳ ସେତିକି ନୁହେଁ । କୁନ୍ତଳାକୁମାରୀ କେବଳ ଖ୍ରୀଷ୍ଟିୟାନ ଧର୍ମର ଗଣ୍ଡି ମଧ୍ୟରେ ଆବଦ୍ଧ ହୋଇ ରହିପାରି ନଥିଲେ । ୧୯୧୫-୧୬ ମସିହାରେ ତାଙ୍କର ଖୋର୍ଦ୍ଧା ରହଣିକାଳ ମଧ୍ୟରେ ସେ ହିନ୍ଦୁ ଲଳନାମାନଙ୍କ ସହିତ ମିଶିବାର ସୁଯୋଗ ପାଇଥିଲେ । ସେମାନଙ୍କ ସହିତ ବାଉଁଳ, ଆମ୍ବକଷି, ସଙ୍ଗାତ, ଗଙ୍ଗାମୁଗ ବସି ସେମାନଙ୍କର ନିବିଡ଼ ସାହଚର୍ଯ୍ୟ ଲାଭ କରିଥିଲେ । ସୁତରାଂ ହିନ୍ଦୁ ଘରର ଘଣ୍ଟିକାନ୍ତି ଗୁଳିଚକଣୀ, ପୂଜାପାର୍ବଣ ଓ ହିନ୍ଦୁ ବାଳିକାମାନଙ୍କର ନମ୍ର ସରଳ ବ୍ୟବହାର ସ୍ନେହ ଆଦରରେ ସେ କଣି ହୋଇ ଯାଇଥିଲେ । ଥରେ କୁମୁଦିନୀ ନାମ୍ନୀ ଏକ ସାଙ୍ଗକୁ କୁଣ୍ଢେଇ ଧରି କହିଥିଲେ—"ସଙ୍ଗାତ, ମୁଁ ହେଲେ ତୁମପରି ହିନ୍ଦୁ ଘରେ ଜନ୍ମ ହୋଇଥାନ୍ତି କି ?" ହିନ୍ଦୁ ରମଣୀର ଅତିଥିସେବା ମଧ୍ୟ କୁନ୍ତଳାକୁମାରୀଙ୍କୁ ଆକୃଷ୍ଟ କରିଥିଲା । ଏଭଳି ଉଦାର ଆତିଥ୍ୟ କେବଳ ହିନ୍ଦୁ ସଂସ୍କୃତିରେ ସମ୍ଭବ ବୋଲି ସେ ସର୍ବଦା କହୁଥିଲେ । କୁନ୍ତଳାକୁମାରୀଙ୍କ ଜୀବନରେ ଏହି ଖୋର୍ଦ୍ଧା ରହଣି ସମୟ ଅତ୍ୟନ୍ତ ସୁଖମୟ ଥିଲା । ହିନ୍ଦୁ ଯୁବତୀମାନଙ୍କ ମେଳରେ ହସଖୁସି ମଧ୍ୟରେ ତାଙ୍କର ଦିନଗୁଡ଼ିକ ପାଣିପରି ଗଡ଼ିଯାଉଥିଲା । ସେ ଏକ ପତ୍ରରେ ଲେଖିଥିଲେ "ଖୋର୍ଦ୍ଧା ଜୀବନ ହିଁ ମୋର କାବ୍ୟଜୀବନ । ହିନ୍ଦୁ ଯୁବତୀମାନେ ମୋତେ କିଣି ନେଇଥିଲେ । ସେମାନଙ୍କର ଅପାର ସ୍ନେହ ମୋତେ କରୁଣାରସରେ ବୁଡ଼ାଇ ଦେଇଥିଲା । ଆହା ! ସେହି ସୁକୋମଳ ହରିହାସ୍ୟପୂରିତ ଶିଷ୍ଟ

ମଧୁର କଥାଭାଷା ମନେ ପଡ଼ିଗଲେ ମୁଁ ଅଥୟ ହୋଇଯାଏ । ସ୍ୱର୍ଗର ଦେଖା ଯେବେ କେହି କଳ୍ପନା କରୁଥାଏ । ମୁଁ କେବଳ ହିଁ ଦେଖିଛି ସେଇଠି । ପୃଥିବୀପର ସମସ୍ତ ସହି ଦେଇଁ ନାରୀମାନେ ପରିବାରକୁ ଅମୃତ ଦାନ କରନ୍ତି—ପ୍ରିୟ ବଚନରେ, ନିଷ୍ଠାପୂର୍ଣ୍ଣ କାର୍ଯ୍ୟରେ, ମନ୍ତ୍ରଣାରେ ସୂକ୍ଷ୍ମ କଳାରେ, ରନ୍ଧନ କଳାରେ, ସ୍ନେହ ପ୍ରେମରେ ସେହିପରି କେତୋଟି ଦେବୀ ପ୍ରତିମାଙ୍କୁ ମୁଁ ସେଇଠି ଭେଟିଥିଲି । ସେହି ପରମ ବନ୍ଧୁମାନଙ୍କ ନାରୀ-ଗୁଡ଼ିକ, ଅଜାତିର ଭୟଥିଲେ ମଧ୍ୟ କିପରି କାହିଁକି ଯେ ମୋତେ ଏତେ ସ୍ନେହ ଦାନକଲେ ତା ମୁଁ ଯେତେ ଭୁଲିବ ଭାବୁଛି, ଭୁଲିନ । କୃଷ୍ଣ ଗୋପପୁରରୁ ବିଦାୟ ନେଇ ମଥୁରା ଏବଂ ଦ୍ୱାରକାକୁ ଆସିବାପରେ ଯେପରି ତାଙ୍କର ପରମାତ୍ମୀୟା ମହିମୟୀ ରମଣୀ-ଶିରୋମଣି ଗୋପୀକାକୁଳଙ୍କୁ ଏକା ବେଳକେ ଭୁଲି ଯାଇଥିଲେ, ମୁଁ ସେହିପରି ମୋର ସେହି ବନ୍ଧୁମାନ-ମାନଙ୍କୁ ଭୁଲି ରହିଲି । ବେଳେବେଳେ ଭାବୁଛି—ଯାଆନ୍ତି ଥରେ ସେମାନଙ୍କୁ ଦେଖି ଆସନ୍ତି ? କିନ୍ତୁ ଭାବେ, ଯେବେ ସେଥିରୁ ଜଣେ ନଥିବ, ତେବେ ମୁଁ ସହିପାରିବି କି ?" (ଚକ୍ରଧର ମହାପାତ୍ର—କୁନ୍ତଳାକୁମାରୀ ଜୀବନ ଚରିତ ପୃ-୩୬)

ଭିନ୍ନ ଧର୍ମର ହୋଇମଧ୍ୟ ହିନ୍ଦୁ ଲଳନାମାନଙ୍କୁ ସେ କଉଳି ପ୍ରାଣ ଦେଇ ଭଲ ପାଉଥିଲେ ତାର ସତ୍ୟତା ଏଥିରୁ ଉପଲବ୍ଧି କରିହୁଏ । ଏହି ସମୟରେ କୁନ୍ତଳାକୁମାରୀ ରାମାୟଣ ଗଳ୍ପଟିକୁ ସମ୍ପୂର୍ଣ୍ଣ ରୂପେ ଶୁଣିବାର ସୁଯୋଗ ଲାଭ କରିଥିଲେ ।

ଏହାବ୍ୟତୀତ ଗୋସେଇଁମାନଙ୍କଠାରୁ ହିନ୍ଦୁ ସଂସ୍କୃତିର ଅନେକ ଗଳ୍ପ ତଥା ସୀତା, ଦମୟନ୍ତୀ, କୃଷ୍ଣା, ଶକୁନ୍ତଳା ଆଦି ନାରୀମାନଙ୍କର ଜୀବନକାହାଣୀ ବିସ୍ତୃତ ଭାବେ ସେ ଶୁଣିବାକୁ ପାଇଥିଲେ । ଆର୍ଯ୍ୟନାରୀର ସହନଶୀଳତା, ସତୀତ୍ୱବୋଧ, କର୍ତ୍ତବ୍ୟପରାୟଣତା, ଅତିଥି ସେବା ଆଦି ଗୁଣାବଳୀ ତାଙ୍କୁ ମୁଗ୍ଧ ଚକିତ କରିଥିଲା । ଏହିପରି ଖୋର୍ଦ୍ଧାରେ ଘଟିଥିବା ଅନେକ ଘଟଣା ତାଙ୍କୁ ହିନ୍ଦୁ ଆଡ଼କୁ ଆକୃଷ୍ଟ କରିଥିଲା । ସୁତରାଂ ସେ ହିନ୍ଦୁ ହେବାକୁ ଆଗ୍ରହ ପ୍ରକାଶ କରିଥିଲେ ।

ମାତ୍ର ଖ୍ରୀଷ୍ଟିୟାନ ଧର୍ମରୁ ହିନ୍ଦୁଧର୍ମକୁ ଫେରିବାର ବାଟ ଆଉ ନଥିଲା । ସେତେବେଳେ ହିନ୍ଦୁଧର୍ମର ଏକ ସଂସ୍କାରୀ ଧର୍ମ ଥିଲା ବ୍ରାହ୍ମଧର୍ମ ।

କେଶବଚନ୍ଦ୍ରଙ୍କ ପ୍ରତିଷ୍ଠିତ ଏବଂ ବ୍ରାହ୍ମ ସମାଜରେ ୧୯୨୪ ମସିହାରେ କୁନ୍ତଳାକୁମାରୀ ସଭ୍ୟା ହୋଇଥିଲେ । ପରେ ପରେ ନଗେନ୍ଦ୍ରନାଥ ବନ୍ଦୋପାଧ୍ୟାୟଙ୍କ ମଧ୍ୟସ୍ଥତାରେ ସେ ବ୍ରାହ୍ମଧର୍ମ ଗ୍ରହଣ କରିଥିଲେ । ମାତ୍ର ଏଥିରେ ସେ ଅଧିକ ସନ୍ତୁଷ୍ଟ ହୋଇପାରି ନଥିଲେ । ହିନ୍ଦୁ ଧର୍ମକୁ କିପରି ସେ ଆସିବେ ସେହି ଚିନ୍ତାରେ ବ୍ୟଥିତ ଥିବା ସମୟରେ ପଲ୍ଲୀକବି ନନ୍ଦ-କିଶୋରଙ୍କ ଏକ ପ୍ରଶ୍ନର ଉତ୍ତରରେ ସେ କହିଥିଲେ—"ମୁଁ ଆଜି କିଏ କହନ୍ତୁ ? ଆପଣମାନେ ତ ମୋତେ ଆପଣମାନଙ୍କ ସମାଜରେ ନେବାକୁ ସୁଯୋଗ ଦେଇପାରୁ ନାହାନ୍ତି । ତେଣୁ ସମ୍ପୂର୍ଣ୍ଣ ପଷ୍ଟତ୍ ଧର୍ମରେ ନରହି ଠିକେ ତ ଖରଷ୍ଟୀୟ ହୋଇପାରିଛି ।" (କୁନ୍ତଳକୁମାରୀ ଜୀବନଚରିତ ପୃ-୧୫୬)

କୁନ୍ତଳାକୁମାରୀ ଅତ୍ୟନ୍ତ ଆଶାବାଦୀ ଥିଲେ । ତାଙ୍କ ସାହିତ୍ୟ କୃତିରେ ସେ ନୋବେଲ ପ୍ରାଇଜ୍ ପାଇବାର ଆଶା ମଧ୍ୟ ରଖିଥିଲେ । ସେ ନିଜର ଏକ ପତ୍ରରେ ଉଲ୍ଲେଖ କରିଅଛନ୍ତି—"ମୁଁ ନୋବେଲ ପୁରସ୍କାର ପାଇବି ଏହା ଯେନ କେତେ ଥର ପାଇଅଛି, ସରଳା ସ୍ୱପ୍ନ ଦେଖିଛି । ମୁଁ ଜାହାଜରେ ଇଂଲଣ୍ଡ ଯାଉଛି । ସତେ କ'ଣ ତାର ସ୍ୱପ୍ନ ସଫଳହେବ ? ମୁଁ ତାକୁ ଲେଖିଛି—ତୁ ତୋ ସ୍ୱପ୍ନଟି ଲେଖିକରି ରଖିଥା, ଦେଖିବା ସଫଳ ହେବ କି ନାହିଁ । ନୋବେଲ ପ୍ରାଇଜ୍ ପାଇପାରିବି କି ନା ସନ୍ଦେହ, ତେବେ ତା ପାଇବାର ଯୋଗ୍ୟତା ଅର୍ଜନ କରିବାକୁ ମୁଁ ଆକାଙ୍କ୍ଷୀ । (କୁନ୍ତଳାକୁମାରୀ ଜୀବନ ଚରିତ ପୃ-୩୨୦)

କୁନ୍ତଳାକୁମାରୀ ୧୯୨୮ ମସିହା ଜୁଲାଇ ପନ୍ଦରରେ ପ୍ରିୟ ଜନ୍ମଭୂମି ଓଡ଼ିଶା ଛାଡ଼ି ଦିଲ୍ଲୀ ଯାତ୍ରା କଲେ । ଦିଲ୍ଲୀରେ ସେ ୧୯୨୮ ଅଗଷ୍ଟ ମାସରେ କୃଷ୍ଣପ୍ରସାଦ ବ୍ରହ୍ମଚାରୀଙ୍କୁ ବିବାହ କରିଥିଲେ । ମହାନଗରୀ ଦିଲ୍ଲୀକୁ ସେ ନିଜର କର୍ମକ୍ଷେତ୍ର ରୂପେ ବାଛି ନେଲାପରେ ଖୁବ୍ କମ୍ ସମୟ ମଧ୍ୟରେ ସେ ସମସ୍ତଙ୍କର ଆପଣାର ହୋଇ ପଡ଼ିଥିଲେ । ନାରୀ ଜାତିର ରୋଗ ନିବାରଣ ଯେନ ବିଶେଷରେ ଗୋପନୀୟତା ରକ୍ଷା କରିବା ଦିଗରେ ସେ ଅଦ୍ୱିତୀୟା ଥିଲେ । ସତେ ଯେପରି ସେବା, ଜ୍ଞାନ, ଚିକିତ୍ସା, କବିତ୍ୱ, ନମ୍ରତା, ବିନୟ ଦୟା ଓ କରୁଣା ସବୁର ସମନ୍ୱୟରେ ସ୍ରଷ୍ଟା ଏହି ନାରୀ ମୂର୍ତ୍ତିଟି ସର୍ଜନା କରିଥିଲେ । ଦିଲ୍ଲୀରେ ଅବସ୍ଥାନ କରିବା ସମୟରେ ସେ ଚିକିତ୍ସା କ୍ଷେତ୍ରରେ

ସୁନାମ ଅର୍ଜନ କରିଥିଲେ—ମଧ୍ୟ ତାଙ୍କର ସାହିତ୍ୟ ସୃଷ୍ଟି ବାଧାପ୍ରାପ୍ତ ହୋଇଥିଲା । ସେ ନିଜେ ଏକ ପତ୍ରରେ ଲେଖିଛନ୍ତି—"ବ୍ରହ୍ମଚାରୀ ତ ଜାଣି ଅସାହିତ୍ୟିକ । ସେ ବ୍ୟବସାୟୀ, ସେ ସାହିତ୍ୟର କ୍ଷତି, ବୃଦ୍ଧି, ଲାଭ ଲୋକସାନ ବୁଝନ୍ତି ନାହିଁ । ତାଙ୍କର ଇଚ୍ଛା ଯାହା ପଇସା ସଂଗ୍ରହ କରି ନ ପାରିବ ସେ ମୋତେ ସେଥିରେ ଆଉ ଲଗାଇବେ ନାହିଁ । ତେଣୁ ସାହିତ୍ୟ ଛାଡ଼ିଲି । ଯେଉଁ ସାହିତ୍ୟ ଯୋଗୁ ମୁଁ ମଣିଷ ହେଲି ତାକୁ ବାଧ୍ୟ ହୋଇ ତ୍ୟାଗ କରି ବସିଛି ।" (୧୨) (କୁନ୍ତଳାକୁମାରୀ ଜୀବନ ଚରିତ ପୃ-୩୨୮)

ସୁତରାଂ ଦିଲ୍ଲୀରେ ଅବସ୍ଥାନ କରିବା ପରଠାରୁ ସେ ଓଡ଼ିଆରେ ଆଉ କୌଣସି ପୁସ୍ତକ ରଚନା କରିପାରିନାହାନ୍ତି । ତଥାପି ସେ ଓଡ଼ିଶାକୁ ଭୁଲିପାରୁ ନଥିଲେ ଓଡ଼ିଶାର ନଈନାଳ, ବଣବଣି, ପାହାଡ଼ ପର୍ବତ ବେଳେବେଳେ ତାଙ୍କ ନୟନ ପଥରେ ନାଚିଉଠୁଥିଲା । ସେହି ପବିତ୍ର ଭୂମିକୁ ପୁଣିଥରେ ଫେରିଯିବାକୁ ସେ ବ୍ୟାକୁଳ ହୋଇ ଉଠୁଥିଲେ । ସେଥିପାଇଁ ସେ ଏକ ପତ୍ରରେ ଲେଖିଥିଲେ—"ମୁଁ ଚଢ଼େଇହୋଇ ଉଡ଼ିଯାନ୍ତି ସେହିପରି ମୋର ଶାନ୍ତିପୂର୍ଣ୍ଣ ଦରିଦ୍ର ସମାକୁଳିତ ଦେଶକୁ । କ'ଣ କରିବି ? ବଡ଼ ବନ୍ଧନରେ ପଡ଼ିଯାଇଛି । ସବୁ ସ୍ନେହର ଜିନିଷଗୁଡ଼ିକ ଭୁଲି ଯାଉଛି ।" (କୁନ୍ତଳାକୁମାରୀ ଜୀବନ ଚରିତ । ପୃ-୩୨୫-୨୬)

କୁନ୍ତଳାକୁମାରୀଙ୍କର ଲକ୍ଷ୍ୟ ଥିଲା ସେ ଦିଲ୍ଲୀରୁ ଏକଲକ୍ଷ ଟଙ୍କା ଧରି ଓଡ଼ିଶାକୁ ଫେରି ଆସିବେ । ଏହି ଟଙ୍କାରେ 'ଭାରତୀ ତପୋବନ' ପ୍ରତିଷ୍ଠା କରି ନିଜ ମନମୁତାବକ ଓଡ଼ିଆ ସାହିତ୍ୟର ସେବାରେ ନିଜକୁ ନିୟୋଜିତ କରିପାରିବେ ।

ପ୍ରେସ ସ୍ଥାପନ କରି ଓଡ଼ିଶାର ଗାଁ ଗହଳରେ ଅପ୍ରକାଶିତ ଥିବା ଅନେକ ମୂଲ୍ୟବାନ ଗ୍ରନ୍ଥକୁ ଲୋକଲୋଚନକୁ ଆଣି ପାରିବେ । ମାତ୍ର ସ୍ୱାମୀଙ୍କ ଯୋଗୁ ତାଙ୍କର ଏହି ସ୍ୱପ୍ନ ସଫଳ ହୋଇପାରି ନଥିଲା । ତଥାପି ସୁଦୂର ଦିଲ୍ଲୀରେ ଥିବା ସମୟରେ ଓଡ଼ିଆ ସାହିତ୍ୟର ଉନ୍ନତିକଳ୍ପେ କଲିକତାରୁ 'ପ୍ରବାସୀ ଓଡ଼ିଆପତ୍ର' ଶୀର୍ଷକ କାଗଜ ସେ ସମ୍ପାଦନା କରିଥିଲେ । ଦୂରଦେଶରେ ଡାକ୍ତରୀକର୍ମରେ ବ୍ୟସ୍ତ ରହିମଧ୍ୟ ସେ

ଓଡ଼ିଶାର ଲେଖକ ଲେଖିକାମାନଙ୍କ ସହିତ ନିୟମିତ ପତ୍ର ଲାପ କରୁଥିଲେ । ଅନେକ ଲେଖକଙ୍କୁ ନେଇ ସେ 'ଉତ୍କଳ ଭାରତୀ ତପୋବନ ସଂଘ" ନାମକ ଏକ ସାହିତ୍ୟିକ ସଂଗଠନ ସ୍ଥାପନ କରିଥିଲେ । ତା'ର ସାହାଯ୍ୟରେ କେତେକ ଓଡ଼ିଆ ପୁସ୍ତକ ପ୍ରକାଶ କରି ଓଡ଼ିଆ ଲେଖକମାନଙ୍କୁ ଉତ୍ସାହିତ କରିଥିଲେ । ଓଡ଼ିଆମାନଙ୍କୁ ବାହାରେ ପରିଚିତ କରିବା ପାଇଁ ସେ ସର୍ବଦା ବ୍ୟାକୁଳ ଥିଲେ ।

କୁନ୍ତଳାକୁମାରୀ କେବଳ ଚିକିତ୍ସିକା ବା ସାହିତ୍ୟିକା ନଥିଲେ, ଦେଶସେବିକା ଭାବେ ତାଙ୍କର ସ୍ଥାନ ମଧ୍ୟ ଖୁବ୍ ଉଚ୍ଚରେ ଥିଲା । ନାରୀ ସମାଜର ଉନ୍ନତି ପାଇଁ ସେ ସର୍ବଦା ଚିନ୍ତିତ ଥିଲେ । ସମାଜରେ ନାରୀର ସମସ୍ୟାକୁ ସେ ଗଭୀର ଭାବେ ହୃଦୟଙ୍ଗମ କରିପାରିଥିଲେ । ସାମାଜିକ ଶୃଙ୍ଖଳରେ ବନ୍ଧ ହୋଇ ନାରୀର ନିଷ୍ପେଷିତ, ଲାଞ୍ଛିତ ଜୀବନର ହାହାକାରମୟ ବାଣୀ କୁନ୍ତଳା କୁମାରୀଙ୍କ କଣ୍ଠସ୍ୱରକୁ ଅଗ୍ରଇ ଦେଇଥିଲା । ଏହି ନିର୍ଯ୍ୟାତିତା ନାରୀଜାତିର ଉନ୍ନତି ପାଇଁ ସେ ସଚେତନ ଥିଲେ । ନାରୀ ସମାଜର ନଗ୍ନ-ବାସ୍ତବରୂପକୁ ଜଗତ ସମ୍ମୁଖରେ ପ୍ରକାଶ କରିବାକୁ ସେ ଉଦ୍‌ଗ୍ରୀବ ହୋଇ ଉଠୁଥିଲେ । ପାରିବାରିକ ତଥା ସାମାଜିକ ସମସ୍ୟାରେ ମର୍ମାହତ ହୋଇ ସେ ସାହିତ୍ୟ ସାଧନା ପ୍ରତି ଅବହେଳା ପ୍ରଦର୍ଶନ କରିଥିଲେ । ଏ ସମ୍ପର୍କରେ ସେ ଲେଖିଛନ୍ତି—"ମୁଁ ଓଡ଼ିଆ ସାହିତ୍ୟ ସାଧନାଠାରୁ ଦୂରେଇ ଯାଉଛି । ହଁ ହେଲା, ତା'ର ଉତ୍ତର—ମୋର ସାହିତ୍ୟ ସାଧନା ଦ୍ୱାରା ଦେଶର କି ଉପକାର ହୋଇଛି ? ମୋର ବାଣୀ ଓ ଚିନ୍ତାଦ୍ୱାରା ଦେଶ କି ଉନ୍ନତ ସ୍ୱର୍ଗ ସିଂହାସନ ଆରୂଢ଼ ହୋଇଯାଉଛି ? ମୋର ଦେଶ ପରାଧୀନ, ପଦଦଳିତ—ମୁଁ ମଧ୍ୟ ପରାଧୀନ, ପଦଦଳିତ ବନ୍ଦୀ, ଅକର୍ମଣ୍ୟ, ଯେ ନିଜେ ଶୃଙ୍ଖଳା-ବଦ୍ଧ ସେ କୋଟି କୋଟି ଶୃଙ୍ଖଳାବଦ୍ଧଙ୍କୁ କିପରି ବା ମୁକ୍ତିର ସନ୍ଦେଶ ଶୁଣାଇବ ?

ଭାରତବର୍ଷ ଗୋଲାମୀର ଜଞ୍ଜିରରେ ଆବଦ୍ଧ, ସେ ମୁକ୍ତି ଚାହେଁ, ସ୍ୱରାଜ୍ୟ ଚାହେଁ, ମୁଁ ଜଣେ ଭାରତୀୟ ନାରୀ, ମୁଁ ଅସଂଖ୍ୟ ଭାରତୀୟଙ୍କ ସହିତ ଇଂରେଜର ଗୋଲାମ—ଏ ମୋର ବାହ୍ୟବନ୍ଧନ, କିନ୍ତୁ ଭାରତୀୟ ନାରୀ ହିସାବରେ ମୁଁ ଭାରତୀୟ ଦେଶାନ୍ତର, କୁଳାନ୍ତରର ଯେ

ବନ୍ଧନରେ ବନ୍ଧା ମୋର ଆଖି ଥାଇ ଆଖି ନାହିଁ । ଗୋଡ଼ ଥାଇ ମୁଁ ଚାଲିପାରିବ ନାହିଁ । କାନ ଥାଇ କାନ ନାହିଁ । ଅଥଚ ମୁଁ ସ୍ୱଦେଶ ସ୍ୱଜାତିକୁ ମୁକ୍ତିର ସନ୍ଦେଶ ଶୁଣାଇବି, ଏପରି ମିଥ୍ୟାଚାର ମୁଁ କରିପାରିବ ନାହିଁ । ମୁଁ ମୋର ନୈତିକ ମୁକ୍ତି ଚାହେଁ—ମୋଭଳି ସମସ୍ତ ସମବନ୍ଦୀର ନୈତିକ ମୁକ୍ତି ଚାହେଁ । ତା ମଧ୍ୟ ପ୍ରାର୍ଥନାଦ୍ୱାରା ନୁହେଁ । ଆତ୍ମବଳରେ ଅର୍ଜନ କରିବାକୁ ଚାହେଁ । ଯେ ପର୍ଯ୍ୟନ୍ତ ମୁଁ ମୁକ୍ତ ନୁହେଁ ମୁଁ କାହାରିକି ମୁକ୍ତିର ବାଣୀ, ଉଦ୍ଧାରର ଆଶାର ସଞ୍ଜିବନୀ ମନ୍ତ୍ର ଶୁଣାଇବି ନାହିଁ । ଏହା ମୋର ଦୃଢ଼ପ୍ରତିଜ୍ଞା ।

ହରିଜନ ଉଦ୍ଧାର ବିଗରେ ମୋର ବିଶେଷ କିଛି କରିବାର ନାହିଁ । କାରଣ ମୁଁ ନିଜେ ହରିଜନଠାରୁ ମଧ୍ୟ ନିମ୍ନ ଶ୍ରେଣୀର । ମୁଁ ଗୋଟିଏ ବିଷୟରେ ଗଭୀର ଚିନ୍ତାକରେ—ସେଇଟା ଭାରତବର୍ଷୀୟ ନାରୀଜାତିର ପ୍ରକୃତ ପରିସ୍ଥିତି, ଏବଂ ଚିନ୍ତାର ବ୍ୟାକୁଳତାରେ ମୁଁ ଉନ୍ମତ୍ତ, × × × ମୋର ଚିନ୍ତା ଅତି ଉଗ୍ର ଆଉ ଭୟଙ୍କର । ମୁଁ ଭାରତୀୟ ଦ୍ରୌପଦୀ ଆଉ କୁନ୍ତୀଙ୍କୁ ଜଗତ ସାମନାରେ ଦେଖେଇବାକୁ ଚାହେଁ । ଅତଏବ ଅନ୍ୟାନ୍ୟ ସାହିତ୍ୟିକ ସାଧନାରେ ମୋର ସ୍ପୃହା ନାହିଁ । × × × ମୁଁ ଆଧୁନିକ ଧରଣର ଉଚ୍ଚଶିକ୍ଷାର ଘୋର ବିରୋଧୀ । ଶିକ୍ଷାର ଫଳ ମୋ ଜୀବନରେ ମୁଁ ଭୋଗିଛି । ପୁରୁଷ ନାରୀର ଶରୀର ମାତ୍ରାକୁ ସର୍ବଶ୍ରେଷ୍ଠ ଭାବେ କାମନା କରେ । ଏବଂ ମୋର ଧାରଣା, କିନ୍ତୁ ସେହି ପୁରୁଷ ସ୍ୱାମୀ ହିସାବରେ ସ୍ତ୍ରୀକୁ ଧିକ୍କାରିଦିଏ—ଜାର (ଉପପତି ହିସାବରେ) ପ୍ରେମକରେ ପୁଣି ତା ପାଇଁ ନର୍କକୁଣ୍ଡରେ ନୁହେଁ । ପହ୍ନୀଭ ନାରୀର ସର୍ବଶ୍ରେଷ୍ଠ ବନ୍ଧନ ପୁଣି ସର୍ବଶ୍ରେଷ୍ଠ ସମ୍ମାନ, ବସ୍ତୁତ ପାଠପଢ଼ି ନାରୀ କେବଳ ବେଶ୍ୟାହେବାକୁ ଭଲପାଏ ।

" ଆଧୁନିକ ପାଠର ଅର୍ଥ—ଆଧୁନିକ ସଭ୍ୟତାର ମୂଳ ଅର୍ଥ ନାରୀ ପାଇଁ ବେଶ୍ୟା ହୁଅ, ବହୁ ପୁରୁଷକୁ ଭଲପାଅ । ଭାରତବର୍ଷର ବଶିଷ୍ଟ ନାରୀମାନେ ମଧ୍ୟ ବେଶ୍ୟା ଥିଲେ । ସୀତାଙ୍କୁ ବେଶ୍ୟାର କଳଙ୍କ ଲଗାଇ ରାମଚନ୍ଦ୍ର ଘରୁ ତଡ଼ିଲେ । ଜଣେ ବେଶ୍ୟାପାଇଁ ରାଜା ଏଡ଼ୱାର୍ଡ ଗାଦି ଛାଡ଼ିଲେ । ଅଥଚ ଭାରତୀୟ ପୁରୁଷ ସତୀ ନାରୀକୁ ଦୁଇପଇସାରେ ଖରିଦ କରିବାକୁ ଚାହେଁ ! × × × ମୁଁ ଜଣେ ନାରୀ, ନାରୀର ଦୁଃଖ ଦୁର୍ଦ୍ଦଶା

ମା ପ୍ରାଣକୁ ଟୁକ୍ ବାଧେ । (କୁନ୍ତଳାକୁମାରୀ ଜୀବନ ଚରିତ । ପୃ. ୩୨୨-୨୪)
କୁନ୍ତଳାକୁମାରୀଙ୍କ ଏହି ଚିଠିରୁ ନାରୀଜାତି ପାଇଁ କୁନ୍ତଳାକୁମାରୀ କିଭଳି ଚିନ୍ତିତ ଥିଲେ ତାହା ସ୍ପଷ୍ଟ ପ୍ରତିପାଦିତ ହୁଏ ।

କୁନ୍ତଳାକୁମାରୀ ଏକାଧାରରେ ଚିକିତ୍ସିକା, କବି, ଔପନ୍ୟାସିକା, ନାରୀନେତ୍ରୀ ଓ ଦେଶସେବିକା ଭାବରେ ସୁନାମ ଅର୍ଜନ କରିଥିଲେ । ୧୯୩୮ ମସିହା ଅଗଷ୍ଟ ୨୨ ତାରିଖରେ ମାତ୍ର ୩୮ ବର୍ଷ ବୟସରେ ଏହି ମହାନ୍ ଜୀବନର ଅବସାନ ଘଟିଥିଲା । ଓଡ଼ିଶାର ଜଣେ ନାରୀ ଖ୍ରୀଷ୍ଟିୟାନ ପରିବାରରେ ଜନ୍ମି; ସୁଦୂର ବର୍ମାରେ ପ୍ରତିପାଳିତ ହୋଇ, ମହାନଗରୀ ଦିଲ୍ଲୀରେ ନିଜର କର୍ମାନୁଷ୍ଠାନ ପ୍ରତିଷ୍ଠା କରି ଓଡ଼ିଶାବାସୀଙ୍କ ପାଇଁ ଯାହା କରିଗଲେ ତାହା ଚିରଭାସ୍ୱର ହୋଇ ରହିବ । ଓଡ଼ିଆ ଜାତି ବଞ୍ଚିଥିବା ଯାଏ କୁନ୍ତଳାକୁମାରୀ ଚିର ନମସ୍ୟା ହୋଇ ରହିଥିବେ ; ଏଥିରେ ସନ୍ଦେହର ଅବକାଶ ନାହିଁ ।



ବିଶ୍ୱ ଉପନ୍ୟାସ ସାହିତ୍ୟ-ପରିପ୍ରେକ୍ଷୀରେ—

# ଭାରତୀୟ ଓ ଓଡ଼ିଆ ଉପନ୍ୟାସର ଉନ୍ମେଷ

ଆଧୁନିକ ଯୁଗରେ ଉପନ୍ୟାସ ସାହିତ୍ୟ ସୃଷ୍ଟିର ଏକ ବଳିଷ୍ଠ ବିଭାଗ । ଏହା ଏକ ବାସ୍ତବଧର୍ମୀ କଳା । ସମାଜର ପ୍ରଚ୍ଛନ୍ନ ରୂପକୁ ପ୍ରକାଶ କରିବା ସଙ୍ଗେ ସଙ୍ଗେ ଏହା ମଣିଷ ଜୀବନର ସୀମାହୀନ ଆଶା-ଆକାଙ୍‌କ୍ଷା, ସୁଖ-ଦୁଃଖ, ହସ-କାନ୍ଦ, ଆବେଗ-ଉତ୍କଣ୍ଠା ଆଦିକୁ ବିସ୍ତୃତ ଭାବେ କଳାତ୍ମକ ରୂପ ପ୍ରଦାନ କରିଥାଏ । କେବଳ ସେତିକି ନୁହେଁ, ମଣିଷ ଜୀବନର ବାହ୍ୟରୂପକୁ ପ୍ରକଟନ କରିବା ସଙ୍ଗେ ସଙ୍ଗେ ଏହା ମଣିଷ ମନର ଅନ୍ତଃସ୍ଥିତ ଜିଜ୍ଞାସାକୁ ମଧ୍ୟ ସମାଜ ସମ୍ମୁଖରେ ଉପସ୍ଥାପନ କରିଥାଏ । ସେଥିପାଇଁ Ralaph Fox ତାଙ୍କର 'The Novel and the People' ଗ୍ରନ୍ଥରେ ଉଲ୍ଲେଖ କରିଛନ୍ତି—"The novel is not merely fictional prose, it is the prose of man's life, the first art to attempt to take the whole man and give him expression." ସୁତରାଂ ମଣିଷ ସମାଜ ତଥା ଜୀବନର ସାମଗ୍ରିକ ରୂପକୁ ଏହା ପ୍ରକଟନ କରୁଥିବାରୁ ଉପନ୍ୟାସକୁ ମାନବ ଜୀବନର ଗଦ୍ୟ ମହାକାବ୍ୟ ମଧ୍ୟ କୁହାଯାଏ ।

ବାସ୍ତବତା ସହିତ ଉପନ୍ୟାସର ଘନିଷ୍ଠ ସମ୍ପର୍କ ଥିବାରୁ ସାହିତ୍ୟର ଅନ୍ୟାନ୍ୟ ବିଭାଗ ତୁଳନାରେ ,ଏହା ଆଜି ମନୁଷ୍ୟର ଅତି ଆପଣାର ହୋଇପାରିଛି । ସାଂପ୍ରତିକ ମଣିଷ ଏଥିରୁ ନିଜ ଜୀବନର ରସକୁ ଆସ୍ୱାଦନ କରିପାରିଲାପରେ ବିଜୟଦର୍ପରେ ତା'ର ଜୟଗାନ କରିଚାଲିଛି ।

ମାନବ ଜୀବନ ସହିତ ଏକାତ୍ମ ହୋଇଉଠିଥିବା ଏହି ଅର୍ବାଚୀନ କଳାଗତିର ଜନ୍ମ ମାତ୍ର କେତେ ଶହ ବର୍ଷ ତଳର ଘଟଣା । ଅଷ୍ଟାଦଶ ଶତାବ୍ଦୀରେ ଇଂଲଣ୍ଡରେ ମାନବର ଗଣତାନ୍ତ୍ରିକ ଅଧିକାର ସୁଦୃଢ଼ ହେଲାପରେ ପ୍ରଥମେ ସେହି ଦେଶରେ ହିଁ ଉପନ୍ୟାସ ଜନ୍ମଲାଭ କରିଥିଲା । ମୁଦ୍ରାଯନ୍ତ୍ରର ପ୍ରସାରପରେ ପାଠକଗୋଷ୍ଠୀର ଚାହିଦା ପୂରଣ ନିମିତ୍ତ ସାହିତ୍ୟ ରାଜ୍ୟରେ ଏହି ପ୍ରଭାବଶାଳୀ କଳାଶିଳ୍ପର ଆବିର୍ଭାବ ଘଟିଥିଲା ।

ବିଶ୍ୱସାହିତ୍ୟ ଇତିହାସରୁ ଜଣାଯାଏ ଯେ ଖ୍ରୀଷ୍ଟିୟ ଏକାଦଶ ଶତାବ୍ଦୀର ପ୍ରଥମ ଭାଗରେ ଜାପାନର ବିଦୁଷୀ ଲେଖିକା ଲେଡ଼ି ମୁରାସାକୀଙ୍କ ଲିଖିତ 'ଗେନ୍‌ଜୀ କାହାଣୀ' (Gengi monogatari) ଆଧୁନିକ ଉପନ୍ୟାସର ସମସ୍ତ ଲକ୍ଷଣ ବହନ କରିଛି । ଏହା କପୋଳକଳ୍ପିତ ଗଳ୍ପ (Fantastic Story) ବା ରୋମାଞ୍ଚକର ଗଳ୍ପ (Adventure Story) ନୁହେଁ । ଏହା ପ୍ରେମଭାବ ସମ୍ବଳିତ ମନସ୍ତତ୍ତ୍ୱଧର୍ମୀ ଏକ ରଚନା । ଉପନ୍ୟାସର ସମସ୍ତ ଧର୍ମ ବହନ କରିଥିବାରୁ ଏହି କାହାଣୀ ଆଜି ସମଗ୍ର ବିଶ୍ୱରେ ପ୍ରଥମ ଉପନ୍ୟାସର ଗୌରବ ଅର୍ଜନ କରିଛି ।

ଅଷ୍ଟାଦଶ ଶତାବ୍ଦୀ ପୂର୍ବରୁ ଇଂରାଜୀ ସାହିତ୍ୟରେ ଉପନ୍ୟାସଧର୍ମୀ ରଚନାର ଅଭାବ ନ ଥିଲା । ଗିଓ୍ୱାନି ବୋକାସିଓ (Boccaccio) (୧୩୧୩—୧୩୭୫)ଙ୍କ ରଚିତ 'ଡେକାମେରନ' (Decameron) ଗଳ୍ପ ଗ୍ରନ୍ଥକୁ ପ୍ରଥମ ଗଦ୍ୟକୃତି ବୋଲି ଗ୍ରହଣ କରାଯାଇଥାଏ । ଏହି ଗଳ୍ପ ଗ୍ରନ୍ଥରେ ଜୀବନର ଅବିଶ୍ୱରଜନିତ ସମସ୍ୟାକୁ ଉପସ୍ଥାପନ କରାଯାଇଛି । ସାର୍ ଫିଲିପ୍ ସିଡ୍‌ନିଙ୍କ ଲିଖିତ "The Countess of Pembrokes Arcadia' (୧୫୮୦-୧୫୮୬) ଇଂରାଜୀ ସାହିତ୍ୟର ଆଦ୍ୟ ଉପନ୍ୟାସ । ଏହି ଉପନ୍ୟାସରେ ରାଜପୁତ୍ର, ରାଜଜେମା, ପ୍ରେମ, ରୋମାଞ୍ଚ, ପଲ୍ଲୀଦୃଶ୍ୟଆଦି ବିଭିନ୍ନ ବିଷୟରେ ସମ୍ୟକ୍ ବର୍ଣ୍ଣନା ଦେଖିବାକୁ ମିଳେ । ଏଥିରୁ ଅନୁମାନ କରାଯାଏ ଯେ, ଷୋଡ଼ଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂରାଜୀ ସାହିତ୍ୟରେ ଉପନ୍ୟାସର ଉନ୍ମେଷ ଘଟିଥିଲା ।

୧୬୭୮ ଖ୍ରୀଷ୍ଟାବ୍ଦରେ ମ୍ୟାଡ଼ମଡ଼ିଲା ଫାଏଟଙ୍କର 'ଲା ପ୍ରିନ୍‌ସେସ୍ ଡ କ୍ଲେଭସ୍' ଏବଂ ବନିୟନଙ୍କ (John Bunyan) ଲିଖିତ 'Pilgrims

progress'ର ପ୍ରଥମଖଣ୍ଡ ପ୍ରକାଶିତ ହୋଇଥିଲା । ଏହା ପରେ ୧୬୮୪ ଖ୍ରୀଷ୍ଟାବ୍ଦରେ 'Pilgrims progress' ଦ୍ୱିତୀୟ ଖଣ୍ଡ ପ୍ରକାଶ ଲାଭ କରିଥିଲା । ମଣିଷର ଦୟା, କ୍ଷମା, ଭଲପାଇବା ଆଦିର ବର୍ଣ୍ଣନା ଏଥିରେ ପରିଲକ୍ଷିତ ହୁଏ । ଏହା ପରେ ଅଷ୍ଟାଦଶ ଶତାବ୍ଦୀରେ Daniel Defoeଙ୍କ ଲିଖିତ 'Robinson Crusoue' (୧୭୧୯) ଇଂରେଜ ସାହିତ୍ୟର ପ୍ରଥମ କପୋଳକଳ୍ପିତ ଉପନ୍ୟାସ । ପରେ ପରେ Swiftଙ୍କ 'Gullivers Travels' (୧୭୨୬) ପ୍ରକାଶ ପାଇଥିଲା । ଏହି ସମୟରେ ଇଂରାଜୀ ସାହିତ୍ୟ କ୍ଷେତ୍ରରେ Samual John Richardson ଏବଂ Samuel Johnson ନାମକ ଦୁଇଜଣ ପ୍ରସିଦ୍ଧ ଔପନ୍ୟାସିକଙ୍କର ଆବିର୍ଭାବ ଘଟିଥିଲା । Richardson (୧୬୮୯-୧୭୮୧)ଙ୍କ 'Pamela' (୧୭୪୦) ସର୍ବଜନ ସ୍ୱୀକୃତ ଏକ ସାମାଜିକ ଉପନ୍ୟାସ । ଏଥିରେ ବୁର୍ଜୁୟା ଗୋଷ୍ଠୀର ଦରିଦ୍ର ସର୍ବହରା ଗୋଷ୍ଠୀ ଉପରେ ଅତ୍ୟାଚାରର ଏକ ସ୍ପଷ୍ଟ ଚିତ୍ର ଅଙ୍କିତ ହୋଇଛି । ଉପନ୍ୟାସର ନାୟିକା ଦାସୀ ପାମେଲା ଜୀବନର କରୁଣ କାହାଣୀ ପ୍ରତ୍ୟେକ ପାଠକକୁ ଅଭିଭୂତ କରିବା ସଙ୍ଗେ ସଙ୍ଗେ ବୁର୍ଜୁଆ-ଗୋଷ୍ଠୀ ପ୍ରତି ଏକ ତିକ୍ତ ମନୋଭାବ ସୃଷ୍ଟି କରେ । ଏହାପରେ ସେ 'clarissa' ଓ ଅନ୍ୟ କେତେଗୁଡ଼ିଏ ଉପନ୍ୟାସ ଲେଖି ଇଂରେଜୀ ସାହିତ୍ୟରେ ଔପନ୍ୟାସିକ ଭାବେ ଏକ ଉଲ୍ଲେଖଯୋଗ୍ୟ ଆସନ ଅଧିକାର କଲେ । ତାଙ୍କ ପରେ ପରେ ସାମୁଏଲ ଜନ୍‌ସନଙ୍କ ଲିଖିତ ଉପନ୍ୟାସ 'Rossela'(୧୨୫୯), ଅଲିଭର ଗୋଲ୍‌ଡସ୍ମିଥଙ୍କ 'Viocar of Wakefield' (୧୭୬୬), ଗୋଥେଙ୍କ 'ଓ୍ୱାରଦର୍' (୧୭୭୪), ଜନ୍ ଅଷ୍ଟିନ୍‌ଙ୍କ 'ପ୍ରାଇଡ୍ ଏଣ୍ଡ ପ୍ରିଜୁଡ଼ସ୍' (୧୮୧୩), ବାଲଜାକ୍‌ଙ୍କ 'ପେ୍ୟରେ ଗୋରିଅଟ' (୧୮୩୪) ସ୍କାର୍ଲଟ୍ ବ୍ରୁଣ୍ଟେଙ୍କ 'ଫେନ୍ ଇଏର' (୧୮୪୭), ଥାକେରୀଙ୍କ 'ଭାନିଟି-ଫେୟାର୍' (୧୮୪୮), ଚାର୍ଲସ୍ ଡିକେନ୍‌ସଙ୍କ 'ଡେଭିଡ୍ କପରଫିଲ୍ଡ' (୧୮୪୯), ଫ୍ଲବର୍ଟଙ୍କ 'ମାଡ଼ାମ୍‌ବୋଭେରୀ', ଭିକ୍ଟର ହ୍ୟୁଗୋଙ୍କ 'ଲା ମିଜରେବଲ୍' (୧୮୬୨), ଟଲଷ୍ଟୟଙ୍କ 'ଓ୍ୱାର ଆଣ୍ଡ ପିସ୍' (୧୮୬୪), ଡ଼ି. ଏଚ୍. ଲରେନ୍‌ସଙ୍କ 'ସନସ' ଏଣ୍ଡ 'ଲଭରସ' (୧୯୧୩) ପ୍ରଭୃତି ଇଂରେଜୀ ଉପନ୍ୟାସ କ୍ଷେତ୍ରରେ ଏକ-ଏକ ସଫଳ କୃତି ।

କେବଳ ଇଂରାଜୀ ସାହିତ୍ୟରେ ନୁହେଁ, ଏହି ସମୟରେ ବିଶ୍ୱର ଅନ୍ୟାନ୍ୟ ସାହିତ୍ୟରେ ମଧ୍ୟ ଉପନ୍ୟାସ ସୃଷ୍ଟିର ପ୍ରାଥମିକ ପଦକ୍ଷେପ

କରାଯାଇଥିଲା । ଫରାସୀ ସାହିତ୍ୟରେ ୧୭୬୦ ଖ୍ରୀଷ୍ଟାବ୍ଦ ବେଳକୁ ଦାର୍ଶନିକ ଭୋଲ୍‌ଟାୟାରଙ୍କ ଲିଖିତ 'Candide' ନାମକ ଉପନ୍ୟାସ ପ୍ରକାଶ ପାଇଥିଲା । ଏତଦ୍‌ବ୍ୟତୀତ ଇଂରାଜୀ ଉପନ୍ୟାସର ଅନୁବାଦ ମଧ୍ୟ ରୁଷ ଓ ଫରାସୀ ସାହିତ୍ୟରେ ଦେଖାଦେଇଥିଲା । ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତାବ୍ଦୀ ବେଳକୁ ଇଜିପ୍ଟ, ଗ୍ରୀକ୍ ଓ ରୋମ୍ ଅଧିବାସୀଙ୍କର ଧର୍ମଧାରଣା ଉପରେ ପ୍ରତିଷ୍ଠିତ ଅନେକ ଗଳ୍ପ ସୃଷ୍ଟି ହୋଇଥିଲା ଯାହା ପରବର୍ତ୍ତୀ ସମୟରେ ଉପନ୍ୟାସ ରଚନା ପାଇଁ ଖୋରାକ ଯୋଗାଇଥିଲା । ଚତୁର୍ଥ ଓ ପଞ୍ଚମ ଶତାବ୍ଦୀ ବେଳକୁ ଗ୍ରୀକ୍ ଓ ଲାଟିନ୍ ଭାଷାରେ ସେହିସବୁ ପ୍ରାଚୀନ ଗଳ୍ପର ଉନ୍ନତି ସାଧନ ହୋଇଥିଲା । କାଉଣ୍ଟ ଲିଓ ଟଲଷ୍ଟୟ (୧୮୨୮-୧୯୧୦) ଓ ମାକ୍‌ସିମ୍ ଗର୍କି (୧୮୬୮-୧୯୩୬)ଙ୍କ ଲେଖନୀ ଏହି ସମୟରେ ରୁଷ୍ ଉପନ୍ୟାସ ସାହିତ୍ୟକୁ ସମୃଦ୍ଧ କରିଥିଲା । ଷୋଡ଼ଶ ଓ ସପ୍ତଦଶ ଶତାବ୍ଦୀ ବେଳକୁ ଚୀନ୍ ସାହିତ୍ୟରେ ମଧ୍ୟ ଉପନ୍ୟାସଧର୍ମୀ ଗଳ୍ପ ସୃଷ୍ଟି ହୋଇ-ଥିଲା ।

## ଭାରତୀୟ ସାହିତ୍ୟରେ ଉପନ୍ୟାସ ସୃଷ୍ଟିର ଆଦିକାଳ :

ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧ ଭାରତୀୟ ସାହିତ୍ୟରେ ଉପନ୍ୟାସ ସୃଷ୍ଟିର ଆଦିକାଳ । ଭାରତର ପ୍ରାଚୀନ ସାହିତ୍ୟ ସଂସ୍କୃତ ଭାଷାରେ ଅନେକ ଗଳ୍ପ ଓ ଆଖ୍ୟାୟିକା ଗଦ୍ୟରେ ରଚିତ ହୋଇଥିବା ଦୃଷ୍ଟିଗୋଚର ହୁଏ । ତନ୍ମଧ୍ୟରୁ ଦଣ୍ଡୀଙ୍କ 'ଦଶକୁମାର ଚରିତ' ସୁବନ୍ଧୁଙ୍କ 'ବାସବଦତ୍ତା' ଓ ବାଣଭଟ୍ଟଙ୍କର 'ଚରିତ କଥା' ହର୍ଷଚରିତ ଓ କାଳ୍ପନିକ କାହାଣୀ 'କାଦମ୍ବରୀ' ଆଦି ପ୍ରଧାନ । ଏତଦ୍‌ବ୍ୟତୀତ ଚିତ୍ତବିନୋଦନ ଓ ଶିକ୍ଷାଦାନ ନିମିତ୍ତ ସଂସ୍କୃତରେ ଆହୁରି ଅନେକ କାହାଣୀ ରଚିତ ହୋଇଥିଲା । ସେଗୁଡ଼ିକ ମଧ୍ୟରେ ବିଷ୍ଣୁଶର୍ମାଙ୍କ 'ପଞ୍ଚତନ୍ତ୍ର', ନାରାୟଣଙ୍କର 'ହିତୋପଦେଶ' ସୋମଦେବଙ୍କର 'କଥାସରିତସାଗର' ଇତ୍ୟାଦି । ଏଗୁଡ଼ିକ କାଳ୍ପନିକ ହେଲେ ମଧ୍ୟ ସ୍ଥଳବିଶେଷରେ ଏଥିରେ ସମାଜର ବାସ୍ତବ ଚିତ୍ର ପ୍ରକଟିତ ହୋଇଛି । ସୁତରାଂ ବହୁ ପୂର୍ବରୁ ଭାରତୀୟ ସାହିତ୍ୟର ଉପନ୍ୟାସ ସୃଷ୍ଟିର ଶିଳାନ୍ୟାସ କରାଯାଇଥିଲା । ଇଂରେଜମାନଙ୍କ ଆଗମନ ପରେ ଏହି ସୁଦୃଢ଼ ଭିତ୍ତିଭୂମି ଉପରେ ଉପନ୍ୟାସର ସୁରମ୍ୟ ଅଟ୍ଟାଳିକା ନିର୍ମିତ ହୋଇଥିଲା ।

ଭାରତକୁ ଇଂରେଜମାନଙ୍କର ଆଗମନ ଦ୍ୱାରା ଭାରତୀୟମାନେ ଇଂରେଜ ସାହିତ୍ୟ ସମ୍ପର୍କରେ ଆସିଥିଲେ । ଇଂରେଜ ଶିକ୍ଷା, ସଭ୍ୟତା ତଥା ସଂସ୍କୃତିର ସଂସ୍ପର୍ଶରେ ଆସି ଭାରତୀୟମାନେ ଉପନ୍ୟାସ ରଚନାପ୍ରତି ମନ ବଳାଇଥିଲେ । ଏହା ସହିତ ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା, ପତ୍ରପତ୍ରିକା ପ୍ରକାଶ, ଏବଂ ଶିକ୍ଷିତ ମଧ୍ୟବିତ୍ତ ସମାଜର ଆବିର୍ଭାବ ପ୍ରଭୃତି ଉପନ୍ୟାସ ସୃଷ୍ଟିର ଗତିକୁ ତ୍ୱରାନ୍ୱିତ କରିଥିଲା ।

ସମଗ୍ର ଭାରତୀୟ ସ୍ତରରେ ପ୍ରଥମେ ବଙ୍ଗଳା ସାହିତ୍ୟରେ ପ୍ରମଥନାଥ ଶର୍ମାଙ୍କ ଲିଖିତ 'ନବବାବୁ ବିଳାସ' ଉପନ୍ୟାସ ୧୮୨୩ ମସିହାରେ ପ୍ରକାଶ ଲାଭ କରିଥିଲା । ଏହାର ବହୁଦିନ ପରେ ଅର୍ଥାତ୍ ୧୮୫୭ ମସିହାରେ ପ୍ୟାରୀଚାନ୍ଦ ମିତ୍ରଙ୍କ 'ଆଲାଲେର୍ ଘରେର ଦୁଲାଲ' ଉପନ୍ୟାସ ଆତ୍ମପ୍ରକାଶ କଲା । ମାତ୍ର ପରେ ପରେ ବଙ୍କିମ୍ ଚନ୍ଦ୍ରଙ୍କ ଉପନ୍ୟାସ ବଙ୍ଗଳା ସାହିତ୍ୟକୁ ଋଦ୍ଧିମନ୍ତ କରିଥିଲା । ସେହି ବର୍ଷ ମରାଠୀ ସାହିତ୍ୟରେ ପ୍ରଥମ ଉପନ୍ୟାସ 'ଯମୁନା ପର୍ଯ୍ୟଟନ' ସମାଜର ବିଧବା ସମସ୍ୟାକୁ କେନ୍ଦ୍ର କରି ରଚିତ ହୋଇଥିଲା ।

ଅସମୀୟା ସାହିତ୍ୟରେ ୧୮୯୩ ମସିହା ବେଳକୁ ଉପନ୍ୟାସ ରଚନା ପରିଲକ୍ଷିତ ହୁଏ । ଏହି ପ୍ରସଙ୍ଗରେ ପଦ୍ମନାଥ ଗୋହେନଙ୍କର ଉପନ୍ୟାସ 'ଭାନୁମତୀ' (୧୮୯୩) ଓ ରଜନୀକାନ୍ତ ବର୍ଦ୍ଦୋଲୋଇଙ୍କର 'ମିରିଜି-ଆରୀ' (୧୮୯୦) ଉପନ୍ୟାସ ବିଶେଷଯୋଗ୍ୟ । ମାଲୟାଲମ୍ ସାହିତ୍ୟରେ ଆପ୍ପୁନେ ଡୁନ୍‌ଗାଡ଼ିଙ୍କର 'କୁନ୍ଦଲତା' (୧୮୮୭) ଏବଂ ଚନ୍ଦୁମେନନଙ୍କର 'ଇନ୍ଦୁଲେଖା' (୧୮୮୯) ତତ୍କାଳୀନ ସାମାଜିକ ପୃଷ୍ଠଭୂମି ଉପରେ ଲିଖିତ ।

କନ୍ନଡ଼ ସାହିତ୍ୟରେ ପ୍ରଥମ ଅନୂଦିତ ଉପନ୍ୟାସ ହେଉଛି ସଂସ୍କୃତର 'କାଦମ୍ବରୀ' । ଗାଲଗାନାଥଙ୍କର ରଚନା 'ମାଧବ କରୁଣା ବିଳାସ' ବିଜୟନଗର ସାମ୍ରାଜ୍ୟର ଐତିହାସିକ ପୃଷ୍ଠଭୂମି ଉପରେ ଆଧାରିତ । ତେଲୁଗୁ ସାହିତ୍ୟରେ ପ୍ରକାଶିତ ପ୍ରଥମ ଉପନ୍ୟାସ 'ରାଜ-ଶେଖର ଚରିତମ' ଇଂରେଜ ଲେଖକ ଗୋଲ୍ଡସ୍ମିଥ୍‌ଙ୍କ ଉପନ୍ୟାସ 'ଭିକାର ଅଫ୍ ୱେକ୍‌ଫିଲ୍ଡ' ଅବଲମ୍ବନରେ ଲିଖିତ । ତାମିଲ ସାହିତ୍ୟରେ ବେଦନାୟକମ୍ ପିଲ୍ଲାଇଙ୍କ ଲିଖିତ 'ପ୍ରତାପ ମୁଦାଲ୍ଲିଏର

ସରଥିଗନ' (୧୮୭୭), 'ସୁଗୁଣ ସୁନ୍ଦରୀ' (୧୮୬୭) ଆଦି ସମାଜଧର୍ମୀ ରଚନା । ମୀର ରାଜମାୟୂରଙ୍କ ଲିଖିତ 'କମଲାମ୍ବଲ ସରିଥିରମ' (୧୮୯୩) ହେଉଛି ଆଧୁନିକ ତାମିଲ୍ ଉପନ୍ୟାସର ଆଦ୍ୟ ନିଦର୍ଶନ ।

## ଓଡ଼ିଆ ଉପନ୍ୟାସ ରଚନାର ପ୍ରାକ୍‌ପର୍ବ :

ଆଧୁନିକ ଓଡ଼ିଆ ସାହିତ୍ୟରେ ଉପନ୍ୟାସ ସୃଷ୍ଟି ହେବା ପୂର୍ବରୁ କଥା, କାହାଣୀ, ଆଖ୍ୟାୟିକା, ଗଳ୍ପ, ଲୋକକଥା ଆଦି ଗଦ୍ୟ ସୃଷ୍ଟି ହୋଇ ସାରିଥିଲା । ଋଗ ବେଦରେ ବର୍ଣ୍ଣିତ କେତେକ କାହାଣୀ ତତ୍‌କାଳୀନ ସମାଜର ଜୀବନାଲେଖ୍ୟ ପ୍ରଦାନ କରେ । ସେହିପରି ଉପନିଷଦରେ ରୂପକ-ଗଳ୍ପ ଓ ନୀତିମୂଳକ କାହାଣୀ ପରିଦୃଷ୍ଟ ହୁଏ । ପୁରାଣ ଓ ଇତିହାସ ମଧ୍ୟ ନାନାବିଧ କଥା, ଉପକଥା, ଆଖ୍ୟାନ, ଉପାଖ୍ୟାନରେ ଭରପୂର । ରାମାୟଣ, ମହାଭାରତ ଆଦି ପୁରାଣମାନଙ୍କରେ ଭାରତୀୟ ସମାଜର ନିଚ୍ଛକ-ଚିତ୍ର ପ୍ରତିଫଳିତ ହୋଇଛି । ସେହିପରି ଲୋକକଥା, ଓଷାବ୍ରତ ଆଦିରେ ଗୋଟିଏ ଗୋଟିଏ ଗଳ୍ପ ଥିବା ଲକ୍ଷ୍ୟ କରାଯାଏ ।

ଚତୁର୍ଦ୍ଦଶ ଶତାବ୍ଦୀରେ ଅବଧୂତ ସ୍ୱାମୀ ନାରାୟଣାନନ୍ଦଙ୍କ ଲିଖିତ 'ରୁଦ୍ରସୁଧାନିଧି' ଓଡ଼ିଆ ସାହିତ୍ୟରେ ଏକ ଉଲ୍ଲେଖଯୋଗ୍ୟ ଗଦ୍ୟକୃତି । ଏହି ପୁସ୍ତକରେ ଶିବଙ୍କ ମହାତ୍ମ୍ୟ ଓ ଜଣେ ସାଧନାଭ୍ରଷ୍ଟ ଯୋଗୀ ଅଭିନବ ଚୈତନ୍ୟର କାହାଣୀ ବର୍ଣ୍ଣନା କରାଯାଇଛି । ଏଥିରେ ଲେଖକଙ୍କର ରଚନା-ଶୈଳୀ, ଗଳ୍ପ ଗୁମ୍ଫନ ରୀତି, ସ୍ୱାଭାବିକ ସଂଳାପ, ଚରିତ୍ର ଚିତ୍ରଣ, ବର୍ଣ୍ଣନା ବୈଚିତ୍ର୍ୟ, ଅଳଙ୍କାର ପ୍ରୟୋଗ ଓ ତତ୍‌କାଳୀନ ସମାଜଚିତ୍ର ପରିବେଷଣ ବେଶ୍ ଉପଭୋଗ୍ୟ ।

ଏହାପରେ ଆମ ଦୃଷ୍ଟିପଥରେ ପଡ଼େ ବ୍ରଜନାଥ ବଡ଼ଜେନା (୧୭୩୦—୧୭୯୫)ଙ୍କର 'ଚତୁର ବିନୋଦ' । ଅତିରଞ୍ଜିତ ଓ କପୋଳ-କଳ୍ପିତ ହେଲେ ମଧ୍ୟ ତତ୍‌କାଳୀନ ସମାଜଚିତ୍ରର କିଞ୍ଚିତ୍ ଆଭାସ ଏଥିରୁ ମିଳିଥାଏ । ଏତଦ୍‌ବ୍ୟତୀତ ଅନୁବାଦ ଓ ଅନୁସରଣ ମାଧ୍ୟମରେ କେତେକ କଥାଗ୍ରନ୍ଥ ଓଡ଼ିଆ ସାହିତ୍ୟରେ ଦେଖିବାକୁ ମିଳେ । ଇସଲାମୀୟ ସାହିତ୍ୟରେ କେତେକ ଅନୂଦିତ ଓ ଅନୁସୃତ କୃତି ; ଯଥା:—'ଆରବୀ ଉପନ୍ୟାସ' 'ପାରସ୍ୟ ଉପନ୍ୟାସ' 'ମନୋହର ଉପନ୍ୟାସ', 'କାଜୀର ଗଳ୍ପ' ଇତ୍ୟାଦି

ଓଡ଼ିଆରେ ପ୍ରକାଶ ଲାଭ କରିଛି । ଶ୍ରୀମତୀ ହ୍ୟାନା କ୍ୟାଥରିନ୍ ମୁ୍ୟଲେନ୍ସଙ୍କ ଦ୍ୱାରା ବଙ୍ଗଳାରେ ରଚିତ 'ଫୁଲମନି ଓ କରୁଣାର ବିବରଣ' ୧୮୭୧ ମସିହାରେ ଖ୍ରୀଷ୍ଟିୟାନ ପାଦ୍ରୀ ରେଭରେଣ୍ଡ ଜେ. ଷ୍ଟିଭନ୍ସନଙ୍କ ଦ୍ୱାରା ଓଡ଼ିଆରେ ଅନୂଦିତ ହୋଇଥିଲା । ଓଡ଼ିଶାରେ ଇଂରେଜୀ ଭାଷା ଓ ସଂସ୍କୃତିର ପ୍ରସାର ଫଳରେ ଦେଶୀୟ ଲୋକେ ଇଂରେଜୀ ସାହିତ୍ୟକୁ ଜାଣିବାର ସୁଯୋଗ ପାଇଲେ । ଫଳରେ କେତେକ ଇଂରେଜ କାହାଣୀ ଅନୂଦିତ ଓ ଅନୁସୃତ ହୋଇ ଓଡ଼ିଆ ଭାଷାରେ ପ୍ରକାଶଲାଭ କଲା । ତନ୍ମଧ୍ୟରୁ ମଧୁସୂଦନ ରାଓଙ୍କ 'ପ୍ରଣୟର ଅଦ୍ଭୁତ ପରିଣାମ' (୧୮୭୩) ଓ ରାଧାନାଥଙ୍କ 'ଇଟାଲୀୟ ଯୁବା' (୧୮୭୪) ଆଦି ପ୍ରଧାନ ।

## ଓଡ଼ିଆ ଉପନ୍ୟାସର ପ୍ରଥମ ପର୍ଯ୍ୟାୟ :

ଓଡ଼ିଆ ଉପନ୍ୟାସର ବିକାଶଧାରାକୁ ଲକ୍ଷ୍ୟ କଲେ ଜଣାଯାଏ ଯେ ଊନବିଂଶ ଶତକର ଦ୍ୱିତୀୟାର୍ଦ୍ଧରେ ଓଡ଼ିଆ ଉପନ୍ୟାସ ରଚନା ଆରମ୍ଭ ହୁଏ । ନାଟ୍ୟକାର ରାମଶଙ୍କର ରାୟ (୧୮୫୭-୧୯୩୧)ଙ୍କର 'ସୌଦାମିନୀ' (୧୮୭୮) ସାମୟିକ ସାହିତ୍ୟ ପତ୍ରିକା 'ଉତ୍କଳ ମଧୁପ'ରେ ଧାରାବାହିକ ଭାବେ ତିରିଶ ପରିଚ୍ଛେଦ ପର୍ଯ୍ୟନ୍ତ ପ୍ରକାଶଲାଭ କରିଥିଲେ ମଧ୍ୟ ଏହା ଅସଂପୂର୍ଣ୍ଣ । ଆଲ୍ଲାଉଦ୍ଦିନ ଖିଲଜିଙ୍କର ଚିତୋର ଆକ୍ରମଣ ବିଷୟକୁ କେନ୍ଦ୍ରକରି ଉପନ୍ୟାସଟି ରଚିତ । ସେହିପରି 'ପ୍ରଦୀପ' ପତ୍ରିକାରେ 'ଅନାଥିନୀ' (୧୮୮୪) ଓ 'ମଠର ସମ୍ବାଦ' (୧୮୮୫) 'ଶ୍ରୀ' ଛଦ୍ମ ନାମରେ କୌଣସି ବ୍ୟକ୍ତି ପ୍ରକାଶ କରୁଥିଲେ । ଏହି ଉପନ୍ୟାସଗୁଡ଼ିକ ମଧ୍ୟ ଅସଂପୂର୍ଣ୍ଣ ।

ରାମଶଙ୍କର ସରକାରଙ୍କ 'ପଦ୍ମମାଳୀ' (୧୮୮୮) ଓଡ଼ିଆରେ ପ୍ରଥମ ପୂର୍ଣ୍ଣାଙ୍ଗ ଉପନ୍ୟାସ । ଶାଳଗିରିର ଏକ ଐତିହାସିକ ଘଟଣାକୁ କେନ୍ଦ୍ରକରି ଏହି ଉପନ୍ୟାସ ରଚିତ ହୋଇଥିଲେ ମଧ୍ୟ ପ୍ରାୟ ଦେଢ଼ଶହ ବର୍ଷ ତଳର ସମାଜ ଜୀବନର ଚିତ୍ର ଏଥିରେ ପ୍ରକଟିତ ହୋଇଛି । ଏହା ପରେ, ୧୮୯୧ ମସିହାରେ ରାମଶଙ୍କର ରାୟଙ୍କର 'ବିବାସିନୀ' ଉପନ୍ୟାସ ପ୍ରକାଶଲାଭ କରିଥିଲା । ଏହା ଏକ ଐତିହାସିକ ରୋମାନ୍ସଧର୍ମୀ ଉପନ୍ୟାସ । ମରହଟ୍ଟା ଶାସନର ଅତ୍ୟାଚାର, ପ୍ରଜାପୀଡ଼ନ ଓ ତତ୍କାଳୀନ ଦୁର୍ଭିକ୍ଷର ଭୟାବହ ପୃଷ୍ଠଭୂମି ଉପରେ ଏହା ଆଧାରିତ । ପ୍ରାୟ ଏକଶହ କୋଡ଼ିଏ

ବର୍ଷ ଭିତର (୧୬୬୮-୧୭୭୦) ଉତ୍କଳୀୟ ସମାଜଚିତ୍ର ଏହି ଉପନ୍ୟାସରେ ଉପସ୍ଥାପିତ ହୋଇଛି । ଏ ଦେଶରେ ମରହଟ୍ଟା ଶାସନ, ଅମଲା, କର୍ମଚାରୀମାନଙ୍କର କାର୍ଯ୍ୟକଳାପ, ଦାରିଦ୍ର୍ୟହେତୁ ଜନସାଧାରଣଙ୍କର ଦୁରବସ୍ଥା, ବିଭିନ୍ନ ପାରିବାରିକ ସମ୍ପର୍କ ତଥା ସାମାଜିକ ସଂସ୍କାର, ଧର୍ମ, ନୈତିକତାର ପ୍ରଭାବ ପ୍ରଭୃତିର ବର୍ଣ୍ଣନା ଏଥିରେ ଦେଖିବାକୁ ମିଳେ । 'ବିବାସିନୀ' ପରେ ଗୋପାଳବଲ୍ଲଭ ଦାସଙ୍କ 'ଭୀମାଭୂୟାଁ' ୧୮୯୩ ମସିହାରେ ରଚିତ ଓ ୧୯୦୮ ମସିହାରେ ପ୍ରକାଶିତ ହୋଇଥିଲା । ଆଦିବାସୀମାନଙ୍କର ଜୀବନ, ସମାଜ, ଧର୍ମ, ବିଶ୍ୱାସ ଓ ଆଦିବାସୀ ପୁରୁଷ ଭୀମାର ମାନବିକ ଓ ଚାରିତ୍ରିକ ବୈଶିଷ୍ଟ୍ୟ ଏହାର ମୁଖ୍ୟ ବିଷୟବସ୍ତୁ । ଭୂୟାଁ ଜାତିର ସରଳ, ନିରାଡ଼ମ୍ବର, ନିଷ୍କପଟ ଜୀବନଯାତ୍ରାର ଜୀବନ୍ତଚିତ୍ର ଔପନ୍ୟାସିକ ଉକ୍ତ ଉପନ୍ୟାସରେ ପୁଙ୍ଖାନୁପୁଙ୍ଖ ଭାବେ ବର୍ଣ୍ଣନା କରିଅଛନ୍ତି । 'ପଦ୍ମମାଳୀ' ଓ 'ବିବାସିନୀ'ଠାରୁ ଏହା ଏକ ନୂତନ ସ୍ୱାଦର ଉପନ୍ୟାସ ହେଲେ ମଧ୍ୟ କଥନଭଙ୍ଗୀ, ଭାଷାପ୍ରୟୋଗ ଓ ଘଟଣା-ବିନ୍ୟାସରେ ଏହା ପୂର୍ବ ଆଲୋଚ୍ୟ ଉପନ୍ୟାସଗୁଡ଼ିକର ସମଧର୍ମୀ ଏକ ଘଟଣା ପ୍ରଧାନ ଉପନ୍ୟାସ ।

## ଓଡ଼ିଆ ଉପନ୍ୟାସର ଦ୍ୱିତୀୟ ପର୍ଯ୍ୟାୟ :

ଓଡ଼ିଆ ଉପନ୍ୟାସ ସୃଷ୍ଟିର କିଛିବର୍ଷ ପରେ ସାହିତ୍ୟ କ୍ଷେତ୍ରରେ ଯୁଗସ୍ରଷ୍ଟା ଫକୀରମୋହନଙ୍କର ଆବିର୍ଭାବ ଘଟେ । ସେ ଓଡ଼ିଆ ଉପନ୍ୟାସ ସାହିତ୍ୟର ଜନ୍ମଦାତା ନ ହେଲେ ମଧ୍ୟ ପ୍ରତିଷ୍ଠାତା । ଓଡ଼ିଆ ଉପନ୍ୟାସରେ ପ୍ରଚଳିତ ଥିବା ପାରମ୍ପରିକତାର ପରିବର୍ତ୍ତନ କରି ସେ ଏକ ନୂତନ ମୂଲ୍ୟବୋଧର ପ୍ରତିଷ୍ଠା କଲେ । ଏହି ବୈପ୍ଳବିକ ପରିବର୍ତ୍ତନ ପାଇଁ ସେ ଯେଉଁ ମୌଳିକତା ଅବଲମ୍ବନ କଲେ ତାହା ହେଉଛି ତାଙ୍କର ବିଷୟବସ୍ତୁ ନିର୍ବାଚନ, ଚରିତ୍ରସଜ୍ଜା, ଭାଷା ଓ ଶୈଳୀ ।

ଫକୀରମୋହନ ପୂର୍ବ ଦୁଇଶହ ବର୍ଷର (୧୭୨୦-୧୯୨୦) ଉତ୍କଳୀୟ ସମାଜଜୀବନକୁ ତାଙ୍କର ଚାରିଖଣ୍ଡି ପ୍ରସିଦ୍ଧ ଉପନ୍ୟାସରେ ଚିତ୍ରଣ କରିଅଛନ୍ତି । ମରହଟ୍ଟା ଶାସନର ନିର୍ମମ ଅତ୍ୟାଚାରରେ ଓଡ଼ିଶାରେ ଯେଉଁ ଦୁର୍ଗତି ଦେଖା ଦେଇଥିଲା ତାହାର ଏକ ଜୀବନ୍ତ ପ୍ରତିଛବି ବହନ କରିଛି 'ଲଛମା' (୧୯୦୩) ଉପନ୍ୟାସ । ଇଂରେଜ ଶାସନର ପ୍ରଥମ

ପର୍ଯ୍ୟାୟରେ ( ୧୮୦୦-୪୦ ) ଏ ଦେଶର ପ୍ରତିଷ୍ଠିତ ଜମିଦାର ଗୋଷ୍ଠୀ ନିଜର ପାରମ୍ପରିକ ଗୌରବ ଓ ପ୍ରତିପତ୍ତି ହରାଇଥିଲେ । ସେମାନଙ୍କ ସ୍ଥାନରେ ଏକ ଫମ୍ପା ଅହେତୁକ ଜମିଦାର ଗୋଷ୍ଠୀର ଅଭ୍ୟୁଦୟ ଘଟିଥିଲା । ଏହି ପରମ୍ପରାହୀନ ଜମିଦାର ଗୋଷ୍ଠୀ ପ୍ରଜାମାନଙ୍କୁ ମନଇଚ୍ଛା ଶୋଷଣ କରୁଥିଲେ । ଫଳରେ ସାମାଜିକ ଜୀବନ ବିପର୍ଯ୍ୟସ୍ତ ହୋଇ ପଡ଼ିଥିଲା । ଫକୀରମୋହନଙ୍କ ଯୁଗାନ୍ତକାରୀ ଉପନ୍ୟାସ "ଛମାଣ ଆଠଗୁଣ୍ଠ" ଏହି ସାମାଜିକ ଭିତ୍ତିଭୂମି ଉପରେ ପ୍ରତିଷ୍ଠିତ । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ( ୧୮୫୦-୮୦ ) ଓଡ଼ିଶା ଗଣଜୀବନରେ ଶିକ୍ଷା ପ୍ରତି ଅନୁରାଗ ପ୍ରକାଶ ପାଇବା ସଙ୍ଗେ ସଙ୍ଗେ ଓଡ଼ିଆମାନେ ସହରାଭିମୁଖୀ ହୋଇ ଉଠିଥିଲେ । ଏହି ଆଧୁନିକ ଶିକ୍ଷାଭିମାନୀ ଯୁବକମାନେ ସହରରେ ନିଜର ବସତି ସ୍ଥାପନ କରି ପଲ୍ଲୀକୁ ଶୋଷଣ କରୁଥିଲେ । ଫକୀରମୋହନଙ୍କ "ମାମୁଁ" ( ୧୯୧୩ ) ଏହାର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ । ନାଜର ନଟବର ଦାସ ସହରରେ ଚାକିରି କରି ମଧ୍ୟ ନିଜ ଭଉଣୀ ଚନ୍ଦ୍ରମଣିର ନଶିପୁରର ଜମିଦାରୀକୁ ଶୋଷଣ କରିବାକୁ କୁଣ୍ଠାବୋଧ କରିନାହାନ୍ତି । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଓଡ଼ିଶାରେ ଯେଉଁ ଇଂରାଜୀ ଶିକ୍ଷାର ପ୍ରଚଳନ ଘଟିଥିଲା ଏହାର ଶେଷ ଦ୍ୱିଦଶକ ବେଳକୁ ଓ ବିଂଶ ଶତାବ୍ଦୀର ପ୍ରାରମ୍ଭରେ ( ୧୮୮୦-୧୯୨୦ ) ଏହା ଓଡ଼ିଆ ଜନଜୀବନରେ ଅଧିକ ଆଦର ଲାଭ କରିଥିଲା । ପାଶ୍ଚାତ୍ୟ ଶିକ୍ଷା, ସଭ୍ୟତା, ସଂସ୍କୃତି ଓ ଆଚାର ବ୍ୟବହାରକୁ ଆଖି ଆଗରେ ରଖି ଓଡ଼ିଆ ସମାଜରେ ପୂରି ରହିଥିବା କୁସଂସ୍କାରକୁ ଦୂରୀଭୂତ କରିବା ନିମିତ୍ତ ଓଡ଼ିଶାର ଶିକ୍ଷିତ ଗୋଷ୍ଠୀ ଆଗଭର ହୋଇ ଉଠିଥିଲେ; ମାତ୍ର ପ୍ରକୃତ ସଂସ୍କାରକର ଦୂରଦୃଷ୍ଟି ନଥିବା ହେତୁ ସେମାନଙ୍କୁ ଯେଉଁ ଅସୁବିଧାର ସମ୍ମୁଖୀନ ହେବାକୁ ହୋଇଛି, ତାହାର ସ୍ୱାକ୍ଷର ବହନ କରୁଛି 'ପ୍ରାୟଶ୍ଚିତ୍ତ' (୧୯୧୫) ଉପନ୍ୟାସ ।

ଫକୀରମୋହନ ମୁଖ୍ୟତଃ ସମାଜସଚେତନ ଶିଳ୍ପୀ ଓ ସଂସ୍କାରକ । ତେଣୁ ତତ୍କାଳୀନ ସମାଜର ସମସ୍ତ କଳଙ୍କ ଓ ଆବର୍ଜନାକୁ ପରିହାର କରି ଏକ ଶୃଙ୍ଖଳିତ ଓ ସୁନ୍ଦର ସମାଜ ଗଢ଼ି ତୋଳିବାର ଆଶା ପୋଷଣ କରିଛନ୍ତି ସେ, ସେଥିପାଇଁ ରାଜମଣ୍ଡଳର ରାଜା-ରାଣୀ, ରାଜପୁତ୍ର-ରାଜକନ୍ୟା ତାଙ୍କ ସାହିତ୍ୟର ମୁଖ୍ୟ ଆସନରେ ଅଧିଷ୍ଠିତ ନୁହନ୍ତି । ପରମ ସ୍ୱାର୍ଥାନ୍ୱେଷୀ ନାଜର ନଟବର, ଦୁଷ୍ଟ ମ୍ଳେଚ୍ଛ ଶୋଷଣକାରୀ ମଙ୍ଗରାଜ, ଇତର

ଚମ୍ପା, ଶଶିକଳା ତାଙ୍କ ସାହିତ୍ୟରେ ମୁଖ୍ୟ ଆସନ ଲାଭ କରି ଯେଉଁଭଳି ପ୍ରାଧାନ୍ୟ ଲଭିଁ କରିଛନ୍ତି, ସାରିଆ, ଭଟିଆ, ସାନ୍ତାଣୀ, ଗେଣ୍ଡେଇ ଓ. ନାକ ଫୋଡ଼ିଆ ମା' ପରି ପଲ୍ଲୀର ସରଳ ନିରୀହ ଚରିତ୍ର ମଧ୍ୟ ତାଙ୍କ ଲେଖାମାରେ ସେହିଭଳି ଜୀବନ୍ତ ହୋଇ ଉଠିଛନ୍ତି । ମୁଖ୍ୟ ହେଉ ବା ଗୌଣ ହେଉ ଫକୀର ମୋହନଙ୍କ ପ୍ରତ୍ୟେକ ଚରିତ୍ର ଓଡ଼ିଶାର ଧୂଳିମାଟି ଓ ପାଣି ପବନରେ ବର୍ଦ୍ଧିତ ତଥା ପ୍ରତିପାଳିତ ହୋଇଅଛନ୍ତି । କେବଳ ଗ୍ରାମ୍ୟ ଚରିତ୍ର ନୁହନ୍ତି, ସେମାନଙ୍କ ମୁହଁରେ ଗାଁ ଦାଣ୍ଡର ଭାଷା ଦେବାକୁ ଫକୀରମୋହନ ଭୁଲି ନାହାନ୍ତି । ସୁତରାଂ ଫକୀରମୋହନଙ୍କ ଉପନ୍ୟାସରେ ସ୍ଥାନ ପାଇଥିବା ଗ୍ରାମ୍ୟଭାଷା, ପ୍ରବାଦ, ପ୍ରବଚନ ଏବଂ ଏକାନ୍ତ ଗ୍ରାମ୍ୟ ଶୈଳୀ ସହିତ ଘଟଣାଗୁଡ଼ିକ ପର୍ଯ୍ୟବେକ୍ଷଣ, ମାନବଜୀବନର ବିଶ୍ଳେଷଣ, ସାମାଜିକ ସମସ୍ୟାର ଉପସ୍ଥାପନ ଓ ତା'ର ସମାଧାନର ପନ୍ଥା ନିର୍ଦ୍ଧାରଣ ତାଙ୍କ ଉପନ୍ୟାସର ପ୍ରଧାନ ବୈଶିଷ୍ଟ୍ୟ ।

ଫକୀରମୋହନଙ୍କ ଯଥାର୍ଥ ଉତ୍ତରଦାୟାଦ ଭାବେ ଉପନ୍ୟାସ କ୍ଷେତ୍ରରେ ଚନ୍ଦ୍ରମଣି ମହାନ୍ତି ବିଶିଷ୍ଟ ସ୍ଥାନ ଅଧିକାର କରନ୍ତି । ତାଙ୍କର 'ଟଙ୍କାଗଛ', 'ରୂପାଚଢ଼େଇ', 'ଯୁଗଳମଠ', 'ବୁଲାଫକୀର, ଏବଂ 'ଶନିସପ୍ତା' ଆଦି ଗୋଟିଏ ଗୋଟିଏ ସଫଳ କୃତି । ଭାରତର ଧର୍ମୀୟ ଅନୁଷ୍ଠାନ ମଠ ବାଡ଼ିମାନଙ୍କରେ ମାନ୍ତ ବା ଆଦର୍ଶ ଅନ୍ତରାଳରେ ମଠାଧୀଶମାନଙ୍କର ଅସଂଯତ ଉଚ୍ଛୃଙ୍ଖଳ, ବିଳାସ ବ୍ୟସନପୂର୍ଣ୍ଣ ଜୀବନ 'ଯୁଗଳମଠ' ଉପନ୍ୟାସରେ ପ୍ରଦର୍ଶିତ । ବିଷୟବସ୍ତୁ ନିର୍ବାଚନ ଅବା ଚରିତ୍ରଚିତ୍ରଣ ଦୃଷ୍ଟିରୁ ଦେଖିଲେ ଚନ୍ଦ୍ରମଣି ମହାନ୍ତିଙ୍କ ଉପନ୍ୟାସରେ ଫକୀରମୋହନଙ୍କ ଉପନ୍ୟାସ ଅପେକ୍ଷା ସେପରି କିଛି ବୈଶିଷ୍ଟ୍ୟ ଥିବା ଦୃଷ୍ଟିଗୋଚର ହୁଏ ନାହିଁ ।

ଚନ୍ଦ୍ରମଣି ମହାନ୍ତିଙ୍କ ପରେ ଓଡ଼ିଆ ଉପନ୍ୟାସ ଜଗତରେ ଆବିର୍ଭୂତ ହୁଅନ୍ତି ଔପନ୍ୟାସିକା କୁନ୍ତଳାକୁମାରୀ ସାବତ ( ୧୯୦୦-୩୮ ) ତାଙ୍କର 'ଭ୍ରାନ୍ତି, ( ୧୯୨୩ ) 'ନଅଙ୍ଗୁଣ୍ଠି', ( ୧୯୨୫ ) 'କାଳିବୋହୂ', 'ପରଶ-ମଣି, 'ରଘୁ ଅରକ୍ଷିତ' ( ୧୯୨୮ ) ଆଦି ଉପନ୍ୟାସ ତାଙ୍କ ପ୍ରତିଭାର ପରିଚୟ ପ୍ରଦାନ କରେ । ଘଟଣା ପରିକଳ୍ପନା ଓ ବିଷୟବସ୍ତୁ ନିର୍ବାଚନ କ୍ଷେତ୍ରରେ କିଞ୍ଚିତ୍ ଅଭିନବତ୍ୱ ତାଙ୍କ ଉପନ୍ୟାସରେ ପରିଲକ୍ଷିତ ହୁଏ ।

ତତ୍କାଳୀନ ସମାଜ ତଥା ବ୍ୟକ୍ତିର ଉନ୍ନତି ପାଇଁ ସେ ସର୍ବଦା ତତ୍ପର ଥିଲେ । ତେଣୁ ତାଙ୍କର ଉପନ୍ୟାସଗୁଡ଼ିକ ଉଦ୍ଦେଶ୍ୟମୂଳକ, "ଜାତିଭେଦ, ନାରୀନିର୍ଯ୍ୟାତନା, କୁସଂସ୍କାର ଓ ଅନ୍ଧବିଶ୍ୱାସ ବିରୁଦ୍ଧରେ ଔପନ୍ୟାସିକା ସ୍ୱର ଉତ୍ତୋଳନ କରିଥିବାର ଜଣାଯାଏ । ଓଡ଼ିଶାର ଗାଁ ଗହଳ, ସମାଜ ତଥା-ପରିବାରର ଅବଚ୍ଛେଦ୍ୟ ଜନିତ ନିଚ୍ଛକ ରୂପ ତାଙ୍କ ଉପନ୍ୟାସରେ ଦୃଷ୍ଟିଗୋଚର ହୁଏ । ଫକୀରମୋହନ ସମାଜର ବାସ୍ତବଚିତ୍ର ଅଙ୍କନରେ ସଫଳତା ଅର୍ଜନ କରିଥିଲେ—ଏହା ସ୍ୱୀକାର୍ଯ୍ୟ, ମାତ୍ର ତାଙ୍କର ଦୃଷ୍ଟି ସମାଜର ଉଚ୍ଚ ଓ ନିମ୍ନଶ୍ରେଣୀ ଉପରେ ନିବଦ୍ଧ ଥିଲା । ମଧ୍ୟବିତ୍ତ ଶ୍ରେଣୀ ପ୍ରତି ସେ ବିଶେଷ ଧ୍ୟାନ ଦେଇ ନଥିଲେ । କୁନ୍ତଳାକୁମାରୀ ପ୍ରଥମେ ଏହି ମଧ୍ୟବିତ୍ତ ଗୋଷ୍ଠୀକୁ ତାଙ୍କ ଉପନ୍ୟାସ ଦରବାରକୁ ଟାଣି ଆଣିଥିଲେ । ସେମାନଙ୍କ ଜୀବନର ସୁଖ, ଦୁଃଖ, ହସ-କାନ୍ଦ ଆଦିକୁ ନିଜ ଲେଖନୀ ମୂନରେ କଳାତ୍ମକ ରୂପ ପ୍ରଦାନ କଲେ ।

## ବିଷୟବସ୍ତୁ :

**ଭ୍ରାନ୍ତି**—ପାରିବାରିକ ଜୀବନର ଭିତ୍ତିଭୂମି ଉପରେ 'ଭ୍ରାନ୍ତି' ଉପନ୍ୟାସ ପ୍ରତିଷ୍ଠିତ । ମଧ୍ୟବିତ୍ତ ଜମିଦାର ହରିହର ଶ୍ରେଷ୍ଠରାୟଙ୍କର ଏକମାତ୍ର କନ୍ୟା ଶେଫାଳି । ବାପ ମା'ଙ୍କର ନୟନପିତୁଳି, ଅଳିଅଳି କନ୍ୟା-'ରାଣୀ ଶେଫାଳିକା' । ଧାର୍ମିକ ବ୍ୟକ୍ତି ନାଏବ ଘନଶ୍ୟାମ ମହାନ୍ତି ଏହି ସଦାଶୟ ଜମିଦାରଙ୍କର ଆଶ୍ରିତ । ଅନଙ୍ଗମୋହନ ଘନଶ୍ୟାମ ମହାନ୍ତିଙ୍କର ଏକମାତ୍ର ମାତୃହୀନ ସନ୍ତାନ । ଜମିଦାର ପତ୍ନୀ ଇନ୍ଦୁମୁଖୀଙ୍କ ଅମାପ ସ୍ନେହ ଆଦରରେ ଏହି ଦୁଇଟି ଶିଶୁ ଏକ ପରିବାରରେ ଲାଳିତ ପାଳିତ । ଦୁହେଁ ଦୁହିଙ୍କୁ ପ୍ରାଣଭରି ଭଲ ପାଆନ୍ତି । ସମୟ ଗଡ଼ି ଚାଲିଛି । ଦୁହେଁ ବଡ଼ ହୋଇଛନ୍ତି । ତାଙ୍କର ସେହି ଭଲ ପାଇବା ପ୍ରେମରେ ପରିଣତ ହୋଇଛି । ଏହି ପ୍ରେମ ଦେହଜ ନୁହେଁ ଆତ୍ମଜ, ମାତ୍ର ଜମିଦାର ଗୃହରେ ଆଶ୍ରିତ ସାନନ୍ଦ ପରିବାର କୁଚକ୍ରାନ୍ତରେ ଉଭୟେ ଉଭୟଙ୍କୁ ଭୁଲ୍-ବୁଝିଛନ୍ତି । ଫଳରେ ଅନଙ୍ଗମୋହନ ଜମିଦାର ପରିବାରର ଅଜାଣତରେ ଦେଶତ୍ୟାଗୀ ହୋଇଛନ୍ତି । ଅନଙ୍ଗମୋହନର ଅନୁପସ୍ଥିତି ଶେଫାଳି ପାଇଁ ଅସହ୍ୟ ହୋଇଛି । ମାନସିକ ଯନ୍ତ୍ରଣାରେ ସେ ଛଟପଟ ହୋଇଛି । ଚତୁର୍ଦ୍ଦିଗ ତାକୁ ଅନ୍ଧାର ଦିଶିଛି । ମାନସିକ ଦୁଶ୍ଚିନ୍ତା ସହିତ ଶାରୀରିକ

ଅସୁସ୍ଥତା ତାର ଦିନକୁ ଦିନ ବୃଦ୍ଧିପାଇଛି । ସେ ଶଯ୍ୟାଶାୟୀ ହୋଇଛନ୍ତି । କିଛିଦିନ ପରେ ଶେଫାଳିର ଶିଷ୍ୟତ୍ରିଣୀ ସରଯୂ ଦିଦି ଠାରୁ ଅନଙ୍ଗମୋହନ ଶେଫାଳିର ଦୁଃସମ୍ବାଦ ପାଇ ଘରକୁ ଫେରି ଆସିଛି । ସମସ୍ତେ ଖୁସି ହୋଇଛନ୍ତି । ତା'ର ଅଶେଷ ସେବା ଓ ଯତ୍ନରେ ଶେଫାଳି ମୃତ୍ୟୁ ମୁଖରୁ ଉଦ୍ଧାର ପାଇଛି । ଉଭୟେ ଉଭୟଙ୍କର ଭୁଲ ବୁଝିପାରିଛନ୍ତି । ପରିଶେଷରେ ଦୁହିଁଙ୍କର ଶୁଭବିବାହ ସୁରୁଚ୍ଛଭିରେ ସମ୍ପନ୍ନ ହୋଇଛି ଓ ଦୁହେଁ ସୁଖମୟ ଦାମ୍ପତ୍ୟ ଜୀବନ ଉପଭୋଗ କରିଛନ୍ତି । ଘଟଣାରେ ନୂତନତ୍ୱ ନ ଥିଲେହେଁ 'ଭ୍ରାନ୍ତି' ଏକ ସୁଖପାଠ୍ୟ ଉପନ୍ୟାସ ।

**ନଅଭୁଣ୍ଡୀ**—କୁନ୍ତଳାକୁମାରୀଙ୍କ 'ନଅଭୁଣ୍ଡୀ' ଏକ ହାସ୍ୟରସାତ୍ମକ ଉପନ୍ୟାସ । ଉପନ୍ୟାସର ନାୟିକା ରତମା ନିଃସ୍ୱ, ଦରିଦ୍ର ଖଣ୍ଡିଆ ପୁତ ବଢ଼ଆଇ ଝିଅ । ତା'ର ମା ଗେଲ୍ହେଇ । ଏତିକି ତା'ର ପରିଚୟ ନୁହେଁ, ପକ୍କା କଳିଆଖୋରଣୀ ଭାବେ ସେ ଗାଁ ଗଣ୍ଡାରେ ପରିଚିତ । ଲୋକେ ତା ନାଁ ଦେଇଥାନ୍ତି ନଅଭୁଣ୍ଡୀ । ମା'ଝିଅଙ୍କର ସ୍ୱଭାବ ଏକାପରି । ଗାଁର ଲୋକେ ଏମାନଙ୍କୁ ଭଲ ପାଆନ୍ତି ନାହିଁ, ଏମାନଙ୍କଠାରୁ ଦୂରେଇ ରହନ୍ତି । ରତମା କଳିଆଖୋରଣୀ ସତ, ହେଲେ ତା'ଠାରେ ସାହସର ଅଭାବ ନଥିଲା । ନିଜେ ଅସାଧାରଣ ସାହସର ପରିଚୟ ଦେଇ ନଅଭୁଣ୍ଡୀ ରତମା ସ୍ୱାଧୀନ-ଚେତା ସଂସ୍କାରକାମୀ ଜମିଦାର କୃଷ୍ଣଚନ୍ଦ୍ର ବଉତରାୟଙ୍କର ସହଧର୍ମିଣୀ ହୋଇଛି । ଜମିଦାରଙ୍କର ପ୍ରଭାବରେ ସେ ଦେଶ ତଥା ନାରୀ ଜାତିର ଉନ୍ନତିକଳ୍ପେ ନିଜ ଶକ୍ତି ମୁତାବକ କାର୍ଯ୍ୟ କରିଛି । ତା'ର ପୂର୍ବ ରୂପ କ୍ରମେ ଅପସରି ଯାଇଛି । ଉପଯୁକ୍ତ ପରିବେଶ ମଧ୍ୟରେ ରହି କଳିଆ-ଖୋରଣୀ ରତମା 'ରହାବଣି ମଙ୍ଗଳଚଣ୍ଡୀ'ରେ ପରିଣତ ହୋଇଛି । ଏହି ଉପନ୍ୟାସରେ ଫକୀରମୋହନଙ୍କ ଉପନ୍ୟାସର ଛାପ ରହିଥିବା ବେଶ ଉପଲବ୍ଧି କରିହୁଏ ।

**କାଳିବୋହୂ**—'କାଳିବୋହୂ' କୁନ୍ତଳାକୁମାରୀଙ୍କ ଏକ ସାମାଜିକ ଉପନ୍ୟାସ । ସମାଜର ବାଲ୍ୟବିବାହ ସମସ୍ୟାକୁ କେନ୍ଦ୍ର କରି ଉକ୍ତ ଉପନ୍ୟାସଟି ରଚିତ । ଲକ୍ଷ୍ମୀ, ଧନୀମହାଜନ ଅଚ୍ୟୁତ ମିଶ୍ରଙ୍କର ଏକମାତ୍ର କନ୍ୟା । ସାତ ବର୍ଷ ବୟସରେ ବ୍ରାହ୍ମଣପୁତ୍ର ପୀତାମ୍ବର ସହିତ ତା'ର ବିବାହ କାର୍ଯ୍ୟ ସମାପନ ହୋଇଥିଲା । ଦଶବର୍ଷ ବୟସରେ ସେ ବିଧବା ହେଲା ।

ଶାସ୍ତ୍ର ନିର୍ଦ୍ଦିଷ୍ଟ ସମସ୍ତ ନୀତିନିୟମ ନିଷ୍ଠାପୂର୍ଣ୍ଣ ଭାବରେ ପାଳନ କରିବାକୁ ସେ ବାଧ୍ୟ ହେଲା । ତା' ମୁଣ୍ଡରୁ ସିନ୍ଦୂର ଲିଭାଇ ଦିଆଗଲା, ଗୋଡ଼ରୁ ଅଳତା ପୋଛିଗଲା, ଶରୀରରୁ ଅଳଙ୍କାରଗୁଡ଼ିକ କାଢ଼ି ନିଆଗଲା । ବିଧବାର ନିର୍ଜଳା ଏକାଦଶୀରେ ତାର କଣ୍ଠ ଶୁଷ୍କ ହେଲା ।

କେଉଁଥିପାଇଁ ତା' ମୁଣ୍ଡରେ ଏତେଗୁଡ଼ାଏ ଦଣ୍ଡ ଲଦି ଦିଆଗଲା, ତାହାର ହେତୁ ସେ ଆବିଷ୍କାର କରିପାରିଲା ନାହିଁ । ତା' ମନରେ ଅନେକ ପ୍ରଶ୍ନ, ଯଥା—"ସେ କିମ୍ପା ଆଜି ଏକାନ୍ତ ନିରାଶ୍ରୟ ନିଃସଙ୍ଗ ଜୀବନ ବହନକରି ଏ ଜଗତରେ ବଞ୍ଚିଛି ? କିମ୍ପା ଜଗତର ସମସ୍ତ ଭୋଗ ତା' ପାଇଁ ବାରଣ ? କିମ୍ପା ନାରୀତ୍ୱ ମାତୃତ୍ୱରୁ ଆଜି ସେ ବଞ୍ଚିତ ? କି ଦୋଷରୁ କି ପାପରୁ ଏ ଦାବଦହନ ? ଲକ୍ଷ୍ମୀ କେବଳ ଶବ୍ଦାବଳୀ ତାହାହିଁ ଭାବୁଥିଲା, ବିବାହ, ପାତିବ୍ରତ୍ୟ ଇତ୍ୟାଦି କୌଣସି ବିଷୟ ସେ ବୁଝିପାରିଲା ନାହିଁ । ବିବାହ କ'ଣ ? କାହାକୁ ସେ ବିବାହ କରିଥିଲା ? କିଏ ତାହାର ପତି ? ତାହାର ପାତିବ୍ରତ୍ୟର ଦାବୀ କିଏ କରେ ? ଏହା ସେ ଏକାନ୍ତରେ ପୋଖରୀ ତୁଠରେ ବସି ଭାବେ । ସଞ୍ଜ ବୁଡ଼ିଯାଏ, ଦୀପ ଲାଗେ, ଠାକୁର ଘରେ ଆରତି ହୁଏ । କିନ୍ତୁ, ଲକ୍ଷ୍ମୀ ଉଠିପାରେ ନାହିଁ । ସେ ଅପାର ଚିନ୍ତାରେ ମଗ୍ନଥାଏ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ ପୃ ୮୬-୮୭) ଇତ୍ୟାଦି ଉତ୍ତର କିନ୍ତୁ ମିଳେନାହିଁ । ବ୍ୟକ୍ତିଗତ ଜୀବନରେ ଔପନ୍ୟାସିକା କୁନ୍ତଳାକୁମାରୀ ଜଣେ ଡାକ୍ତର ଥିଲେ । ସୁତରାଂ ସମାଜର ପ୍ରତ୍ୟେକ ସ୍ତରର ବ୍ୟକ୍ତିମାନଙ୍କ ସହିତ ତାଙ୍କର ନିବିଡ଼ ପରିଚୟ ଥିଲା । ବାଲ୍ୟବିବାହ ପ୍ରଥାର କୁପରିଣତିକୁ ସେ ମର୍ମେ ମର୍ମେ ଅନୁଭବ କରିଥିଲେ । ସୁତରାଂ ଏହି ପ୍ରଥାର ଉଚ୍ଛେଦ ପାଇଁ ସେ ଚେଷ୍ଟା କରିଥିଲେ । ବିଦ୍ୟାସାଗରଙ୍କ ପ୍ରବର୍ତ୍ତିତ ବିଧବାବିବାହକୁ ସେ ପୂର୍ଣ୍ଣ ସମର୍ଥନ କରୁଥିଲେ । ବାଲ୍ୟବିଧବା ନାନା ଦୁଷ୍କର୍ମ କରି ସମାଜକୁ କଳଙ୍କିତ କରିବା ଅପେକ୍ଷା ପୁନର୍ବିବାହ କରି ସୁସ୍ଥ ନୈତିକ ଜୀବନଯାପନ କରିବା ଅଧିକ ଶ୍ରେୟସ୍କର ବୋଲି ସେ ମତପ୍ରଦାନ କରିଥିଲେ । ସେଥିପାଇଁ ତାଙ୍କର 'କାଳିବୋହୂ' ଉପନ୍ୟାସରେ ସେ କେବଳ ବିଧବା ଜୀବନର କାରୁଣ୍ୟର ଚିତ୍ର ପ୍ରଦାନ କରିନାହାନ୍ତି ବା ସମାଜପତିମାନଙ୍କୁ ଏଥିପାଇଁ ଦୋଷଯୁକ୍ତ କରିନାହାନ୍ତି, ଅଧିକନ୍ତୁ ବାଲ୍ୟବିଧବା ଲକ୍ଷ୍ମୀ ସହିତ ଗୁଣବାନ ସଂସ୍କାରକ ଚନ୍ଦ୍ରୋଦୟର

ବିବାହକାର୍ଯ୍ୟ ସମ୍ପନ୍ନ କରି ନିଜ ସଂସ୍କାରୀ ମନୋବୃତ୍ତିର ପରିଚୟ ପ୍ରଦାନ କରିଅଛନ୍ତି । ପରିଶେଷରେ ସମାଜ ମର୍ଯ୍ୟାଦିତା ଲକ୍ଷ୍ମୀଠାରେ କେବଳ ନାରୀତ୍ୱ ଓ ମାତୃତ୍ୱର ବିକାଶ ଘଟିନାହିଁ । ଏକ ସୁସ୍ଥ ସୁନ୍ଦର ସମାଜଗଠନ ଦିଗରେ ସେ ସମଗ୍ର ଜୀବନକୁ ଉତ୍ସର୍ଗୀକୃତ କରିଦେଇଛନ୍ତି । ସମାଜର କାଠ ସାଜିବା ପରିବର୍ତ୍ତେ ସମାଜକୁ ପ୍ରଗତି ପଥରେ ଆଗେଇ ନେବା ଦିଗରେ ସେ ବିଶେଷ ଭାବେ ସହାୟକ ହୋଇଛନ୍ତି ।

**ପରଶମଣି**—କୁନ୍ତଳାକୁମାରୀଙ୍କ 'ପରଶମଣି' ଉପନ୍ୟାସ ଏକ ପାରିବାରିକ ଚିତ୍ର ଉପରେ ଆଧାରିତ । ଶାଶୁ, ନଣନ୍ଦ, ଯାଆ ଓ ସ୍ୱାମୀର ଅତ୍ୟାଚାରରେ ପଲ୍ଲୀବଧୂର ଜୀବନ କିପରି ହାହୁତାଶମୟ ମରୁଭୂମିରେ ପରିଣତ ହୁଏ । 'ପରଶମଣି' ଉପନ୍ୟାସରେ ତା'ର ଚିତ୍ର ପ୍ରତିଫଳିତ । କାଉ କା' ନ କରୁଣୁ ଲଳିତାର ନିଦ ଭାଙ୍ଗେ । କଳପରି ସେ କାମ କରିଯାଏ ରାତି ପର୍ଯ୍ୟନ୍ତ । ବିଶ୍ରାମ ନାହିଁ । ତଥାପି କେହି ତାକୁ ସୁଖ ପାଆନ୍ତି ନାହିଁ । ଶାଶୁଙ୍କର କୋପ ଦୃଷ୍ଟି, ନଣନ୍ଦ ଚମ୍ପାକଳୀର ଚତ୍ରାଉ ଓ ବଡ଼ଯା' ରମା ସୁନ୍ଦରୀଙ୍କର ଈର୍ଷାରେ ତା'ର ଜୀବନ ଜଳି ପୋଡ଼ି ଯାଏ । ଏସବୁ ସତ୍ତ୍ୱେ ତାପାଇଁ ଏକ ବଡ଼ ଆକର୍ଷଣ ଥିଲା ତା'ର ସ୍ୱାମୀଙ୍କର ସ୍ନେହ ମମତା ଆଦର ସୋହାଗ, ସେହି ଟିକକ ପାଇଁ ସେ ସବୁ ଦୁଃଖ କଷ୍ଟ ଭୁଲିଯାଉଥିଲା । ସ୍ୱାମୀ ବିମ୍ବାଧର କଟକରେ କିରାଣୀ ଥିଲେ । ଶାଶୁ, ନଣନ୍ଦ ଓ ଯା'ଙ୍କ ପାଇଁ ସେ ସ୍ୱାମୀ ସହିତ ଏକାନ୍ତ ରହିବାର ସୁଯୋଗ ମଧ୍ୟ ପାଇନଥିଲା । ବିମ୍ବାଧର ସ୍ତ୍ରୀ ଲଳିତାକୁ କଟକ ନେବାପାଇଁ ବସାଘର ଠିକଣା କରିଥିଲେ । ମାତ୍ର ନିଜ ମାତାଙ୍କ ଯୋଗୁଁ ସେ ଲଳିତାକୁ କଟକ ନେଇପାରି ନଥିଲେ । ଫଳତଃ ବିମ୍ବାଧର କୁପଥରେ ପରିଚାଳିତ ହୋଇ ନିଜ ସ୍ତ୍ରୀକୁ ହତାଦର କରିଥିଲେ । ଲଳିତା ଜୀବନର ସବୁ ସରସତା ଲିଭି ଯାଇଥିଲା । ତାର ଜୀବନ ହାହୁତାଶମୟ ମରୁଭୂମିରେ ପରିଣତ ହୋଇଥିଲା । ନିଜ ଜୀବନର ସମୀକ୍ଷା କରି କରି ସାରା ଜୀବନ ତା'ର ଅତିବାହିତ ହୋଇଯାଇଥିଲା । ସ୍ୱାମୀ ବିମ୍ବାଧରଙ୍କ ମୃତ୍ୟୁପରେ ଔପନ୍ୟାସିକା କୁନ୍ତଳାକୁମାରୀ ଲଳିତାକୁ 'ପରଶ-ମଣି' ରୂପେ ଆଖ୍ୟାୟିତ କରିଛନ୍ତି । ଶାଶୁ, ନଣନ୍ଦ ଓ ଯା' ବଧୂ ଲଳିତାର ଅସୀମ ଧୈର୍ଯ୍ୟ ଓ ସୁଗୁଣର ସଂସ୍ପର୍ଶରେ ଆସି ପରିବର୍ତ୍ତିତ ହୋଇଛନ୍ତି । ସେମାନେ ସେମାନଙ୍କ ଭୁଲ ବୁଝିପାରିଛନ୍ତି । ଏହି ଉପନ୍ୟାସରେ ନାରୀର

ଶହ୍ ନାଶ, ତା'ର ଯୋଗୁ ବୈକୁଣ୍ଠ ସମାନ ଘର ନର୍କରେ ପରିଣତ ହୋଇଛି ଏହା କୁନ୍ତଳାକୁମାରୀଙ୍କର ପ୍ରଧାନ ବକ୍ତବ୍ୟ ହୋଇ ଉଠିଛି ।

**ରଘୁ ଅରକ୍ଷିତ**—ଔପନ୍ୟାସିକା କୁନ୍ତଳାକୁମାରୀଙ୍କର 'ରଘୁ ଅରକ୍ଷିତ' ଏକ ବୃହତ୍ତମ ଉପନ୍ୟାସ । ଉକ୍ତ ଉପନ୍ୟାସଟି ସାମାଜିକ ପୃଷ୍ଠଭୂମି ଉପରେ ପ୍ରତିଷ୍ଠିତ । ସ୍ଥାନ ଓ କାଳର ବ୍ୟାପ୍ତି, ଘଟଣା ପରିବେଷଣରେ ନାଟକୀୟତା ଓ ବିଭିନ୍ନପ୍ରକାର ଚରିତ୍ର ଚିତ୍ରଣରେ ଉପନ୍ୟାସଟି ଭରପୂର ହୋଇଉଠିଛି । ଏହି ଉପନ୍ୟାସଟି ମୁଖ୍ୟତଃ ଆଦର୍ଶବାଦ ଓ ଭାଗ୍ୟବାଦ ଉପରେ ଆଧାରିତ । "ଭାଗ୍ୟଂ ଫଳତି ସର୍ବତ୍ର ନ ବିଦ୍ୟା ନ ଚ ପୌରୁଷଂ"—ଉକ୍ତିଟି ଏହି ଉପନ୍ୟାସରେ ପୂର୍ଣ୍ଣରୂପ ଲାଭ କରିଛି । ଉପନ୍ୟାସର ନାୟକ ରଘୁନାଥ ପିତୃମାତୃହୀନ ଏକ ଅରକ୍ଷିତ ବାଳକ । ପିଲାଦିନରୁ ଗାଁ ଛାଡ଼ି ପରିସ୍ଥିତିର ତାଡ଼ନାରେ ନାନାରାଜ୍ୟ ଭ୍ରମଣ କରିଛି । ସେ ଯେଉଁଠି ପହଞ୍ଚିଛି ସେଠାରେ ଅଯାଚିତ ଭାବେ ବହୁ ସୌଭାଗ୍ୟ ଲଭ କରିଛି । ପରିଶେଷରେ ଭାଗ୍ୟ ଜୋରରେ ଜଣେ ଧର୍ମବ୍ୟକ୍ତି ରୂପେ ସମାଜରେ ପରିଚିତ ହୋଇଛି । କିନ୍ତୁ ଦିନ ବିତିଯାଇଛି । ରଘୁ ପତ୍ନୀହରା ହୋଇଛି । ଧନସମ୍ପଦର ମୋହ ତାକୁ ବାନ୍ଧିରଖି ପାରିନାହିଁ । ପତ୍ନୀ ବିୟୋଗର ମର୍ମାନ୍ତକ ଯନ୍ତ୍ରଣାରେ ସେ ଛଟପଟ ହୋଇଛି । ପ୍ରେମିକା ସୀତାକୁ ମଧ୍ୟ ସେ ବିବାହ କରିପାରିନାହିଁ । ଏହାପରେ ଏକ ଅସ୍ଥିର ମୁହୂର୍ତ୍ତରେ ସେ ଦେଶସେବାକୁ ଜୀବନର ଏକମାତ୍ର କର୍ମବୋଲି ଧରିନେଇଛି । ସୁତରାଂ ଶହ ଶହ ଅରକ୍ଷିତମାନଙ୍କର ଦୁଃଖମୋଚନ କରିବା ନିମିତ୍ତ ସେ ପଦାକୁ ଗୋଡ଼ କାଢ଼ିଛି । କେବଳ ଓଡ଼ିଶା ନୁହେଁ, ସର୍ବଭାରତୀୟ ପୃଷ୍ଠଭୂମି ଉପରେ ଏହି ଉପନ୍ୟାସଟି ରଚିତ । ବ୍ରହ୍ମଦେଶ, କଲିକତା, ବଙ୍ଗ ଓ ଓଡ଼ିଆ ସମାଜର ରୀତିମୀତି ଚାଲିଚଳଣି ଓ ଜୀବନଧାରା ଯେଉଁ ଔପନ୍ୟାସିକାଙ୍କର ଗଭୀର ଅନୁଭୂତି ଏହି ଉପନ୍ୟାସରେ ପ୍ରକାଶିତ ।

**ଚରିତ୍ର**—ସାହିତ୍ୟରେ, ଘଟଣାକୁ ଯେଉଁମାନେ ପାଠକ ନିକଟରେ ପରିବେଷଣ କରନ୍ତି, ସେମାନେ ହେଉଛନ୍ତି ଏକ ଏକ ଚରିତ୍ର । ଉପନ୍ୟାସରେ ଅନେକ ଚରିତ୍ରର ସମାବେଶ ଘଟିଥାଏ । ଏହି ଚରିତ୍ର ସମୂହ ଉପନ୍ୟାସର ଆଖ୍ୟାନକୁ ପାଠକସମାଜ ନିକଟରେ ଉପସ୍ଥାପନ କରିଥାନ୍ତି । ଔପନ୍ୟାସିକ ଉପନ୍ୟାସ ଅନୁଯାୟୀ ଚରିତ୍ର ଚୟନ କରିଥାନ୍ତି । ଉଦାହରଣ

ସ୍ୱରୂପ ସାମାଜିକ ଉପନ୍ୟାସ ପାଇଁ ସାମାଜିକ ଚରିତ୍ର ଓ ଐତିହାସିକ ଉପନ୍ୟାସ ପାଇଁ ଐତିହାସିକ ଚରିତ୍ର ସେ କଳାକୁଶଳତାର ସହ ପରିବେଷଣ କରିଥାନ୍ତି । ଏହି ଚରିତ୍ର ସମୂହକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ୧—ମୁଖ୍ୟଚରିତ୍ର, ୨—ଗୌଣ ଚରିତ୍ର । ଯେଉଁ ଚରିତ୍ର ଉପନ୍ୟାସର ଆଖ୍ୟାନ ସହିତ ପ୍ରତ୍ୟକ୍ଷଭାବରେ ଜଡ଼ିତ ଓ ଯିଏ ଉପନ୍ୟାସକୁ ପରିଣତି ଆଡ଼କୁ ଆଗେଇ ନେବାରେ ସମ୍ପୂର୍ଣ୍ଣ ଦାୟୀ ସେ ହିଁ ମୁଖ୍ୟ ଚରିତ୍ର । ନାୟକ ନାୟିକା ସାଧାରଣତଃ ଉପନ୍ୟାସର ମୁଖ୍ୟ ଚରିତ୍ର ହୋଇଥାନ୍ତି । ଏତଦ୍‌ବ୍ୟତୀତ ଯେଉଁ ଚରିତ୍ରଗୁଡ଼ିକ ଘଟଣା-ପ୍ରବାହରେ ସୃଷ୍ଟି ହୋଇ ପରିଣତି ପୂର୍ବରୁ ବିଲୀନ ହୋଇ-ଯାଆନ୍ତି, ସେମାନେ ଗୌଣ ଚରିତ୍ର । ଘଟଣା-ପ୍ରବାହକୁ ଉଦ୍‌ବେଳିତ କରିବାରେ, ମୁଖ୍ୟ ଚରିତ୍ରଗୁଡ଼ିକୁ ଅଧିକ ପ୍ରାଞ୍ଜଳ ଓ ସମଧିକ ପରିସ୍ଫୁଟ କରିବାରେ ଏମାନେ ସହାୟକ ହୋଇଥାନ୍ତି । ଉଦାହରଣ ସ୍ୱରୂପ ଫକୀରମୋହନଙ୍କ 'ମାମୁଁ' ଉପନ୍ୟାସର ଗେହ୍ଲେଇ, ନାକଫୋଡ଼ିଆ ମା' ଇତ୍ୟାଦିଙ୍କୁ ଗ୍ରହଣ କରାଯାଇପାରେ । ଏମାନଙ୍କ ଅନୁପସ୍ଥିତିରେ ଉପନ୍ୟାସର ଅଙ୍ଗହାନି ଘଟିନପାରେ, ମାତ୍ର ଉପନ୍ୟାସର ସରସତା ନିଶ୍ଚିତଭାବେ ନଷ୍ଟ ହୋଇଥାଏ ।

ଚାରିତ୍ରିକ ବିକାଶ ଦୃଷ୍ଟିରୁ ଉପନ୍ୟାସର ଚରିତ୍ର ସମୂହକୁ ଦୁଇ ଭାଗରେ ବିଭକ୍ତ କରାଯାଏ । ୧—ସରଳ ବା ସ୍ଥିର ଚରିତ୍ର (Flat character), ୨—ବର୍ତ୍ତୁଳ ବା ଗତିଶୀଳ ଚରିତ୍ର (Round Charactor) । ସାଧାରଣତଃ ଉପନ୍ୟାସର ପ୍ରତିନିଧିଶ୍ରେଣୀୟ ଚରିତ୍ର ସମୂହ ସ୍ଥିର ଏବଂ ଉପନ୍ୟାସ ପ୍ରାରମ୍ଭରୁ ଶେଷପର୍ଯ୍ୟନ୍ତ କୌଣସି ପରିବର୍ତ୍ତନର ଚିହ୍ନ ଏମାନଙ୍କଠାରେ ପରିଲକ୍ଷିତ ହୁଏ ନାହିଁ, ମାତ୍ର ଗତିଶୀଳ ବା ବର୍ତ୍ତୁଳ ଚରିତ୍ର ଘଟଣା ପ୍ରବାହ ସଙ୍ଗେ ସଙ୍ଗେ ପରିବର୍ତ୍ତିତ ହୁଅନ୍ତି । ଏକ ବିଶେଷ ବାତାବରଣ ମଧ୍ୟରେ ପରିବର୍ତ୍ତିତ ହୋଇ ଏମାନେ ପାଠକମାନଙ୍କୁ ଆଶ୍ଚର୍ଯ୍ୟାନ୍ୱିତ କରନ୍ତି : "The test of a round character is whether it is capable of surprising way. If it never surprises it is flat. If it does not convince it is flat. pretending to be round." (E. M. Forster—Aspects of the Novel—P. 85.)

ନିଜ ଉପନ୍ୟାସ ପାଇଁ ଔପନ୍ୟାସିକ ଉଭୟ ନାରୀ ଓ ପୁରୁଷ ସମେତ ବିଭିନ୍ନ ପ୍ରକାର ଚରିତ୍ର ଚୟନ କରିଥାନ୍ତି । କେଉଁ ଉପନ୍ୟାସରେ ନାରୀଚରିତ୍ର ପ୍ରାଧାନ୍ୟ ଲାଭ କରିଥାଏ ଓ କେଉଁ ଉପନ୍ୟାସରେ ପୁରୁଷ-ଚରିତ୍ର ଉପରେ ଗୁରୁତ୍ୱ ଆରୋପ କରାଯାଇଥାଏ । ଲେଖକର ଅଭିଜ୍ଞତା ଓ ଅନୁଭୂତି ତଥା କଳାକୁଶଳତା ପୂର୍ଣ୍ଣ ଚରିତ୍ର ଚିତ୍ରଣ ଉପରେ ଏହା ଅଧିକାଂଶରେ ନିର୍ଭର କରେ ।

ଔପନ୍ୟାସିକା କୁନ୍ତଳାକୁମାରୀ ଜଣେ ସମାଜ-ସଚେତନ ଶିଳ୍ପୀ । ସୁତରାଂ ତାଙ୍କ ଚରିତ୍ର-ଚୟନର କ୍ଷେତ୍ର ତତ୍କାଳୀନ ସମାଜ । ସମାଜରେ ପୂରିରହିଥିବା ଆବର୍ଜନା ଓ କୁସଂସ୍କାରକୁ ଦୂରୀଭୂତ କରି ଏକ ସୁସ୍ଥସୁନ୍ଦର ସମାଜ ଗଠନ କରିବା ତାଙ୍କର ଲକ୍ଷ୍ୟ ଥିଲା । ତେଣୁ ଅଣ୍ଟିର ନିଆଁକୁ ଝିଣ୍ଟିରେ ପୁରାଇ ପୋଡ଼ିହୋଇ ମରିବାକୁ ସେ ପସନ୍ଦ କରିନାହାନ୍ତି । ୩୮ ବର୍ଷ ଜୀବନକାଳ ମଧ୍ୟରେ ସେ ବିପୁଳ ଅଭିଜ୍ଞତା ହାସଲ କରିଛନ୍ତି । ଜୀବନ ଯାତ୍ରାପଥରୁ ଅନେକ ଘଟଣା ଓ ବିଭିନ୍ନ ପ୍ରକାରର ଚରିତ୍ରକୁ ସ୍ରଷ୍ଟା-ପ୍ରାଣ ସଂଗ୍ରହ କରି କଳ୍ପନାର କାଉଁରୀ ସ୍ପର୍ଶରେ ଓ ବର୍ଣ୍ଣନାର ଛଟା ମଧ୍ୟରେ ସେଗୁଡ଼ିକୁ ଅଧିକ ମନୋଜ୍ଞ ଓ ଜୀବନ୍ତ କରି ନିଜ ଉପନ୍ୟାସରେ ପରିବେଷଣ କରିଛନ୍ତି । ସମାଜର ଉଚ୍ଚ, ମଧ୍ୟବିତ୍ତ ଓ ନିମ୍ନସ୍ତରର ଚରିତ୍ର-ଗୁଡ଼ିକ ତାଙ୍କ ଉପନ୍ୟାସରେ ଦୃଷ୍ଟିଗୋଚର ହୁଅନ୍ତି । ମାତ୍ର ମଧ୍ୟବିତ୍ତ ଶ୍ରେଣୀପ୍ରତି ସେ ଅଧିକ ଅନୁରକ୍ତ ଥିବା ତାଙ୍କ ଉପନ୍ୟାସ ସମୂହରୁ ଜଣାପଡ଼େ ।

## ନାରୀ ଚରିତ୍ର :

ବିଂଶ ଶତକର ପ୍ରଥମ ଦ୍ୱିଦଶନ୍ଧି ବେଳକୁ ଓଡ଼ିଶାରେ ନାରୀ ଜାଗରଣର ମୂର୍ତ୍ତିପ୍ରତୀକ ଥିଲେ ଆଧୁନିକ ଡାକ୍ତର ଉତ୍କଳଭାରତୀ କୁନ୍ତଳା କୁମାରୀ ସାବତ । ନାରୀ ଜାତିପ୍ରତି ତାଙ୍କର ଭଲ ପାଇବା ଥିଲା ଅକଳନୀୟ । ସମାଜରେ ନାରୀର ସ୍ଥାନ, ବିବାହବିଧି, ଜୀବନ ସଂଗ୍ରାମରେ ନାରୀର ଅସହାୟ ଅବସ୍ଥା, ନାରୀ ଉପରେ ହୃଦୟହୀନ ପୁରୁଷର ନିର୍ମମ ଅତ୍ୟାଚାର ଓ ଉତ୍ପୀଡ଼ନ କୁନ୍ତଳାକୁମାରୀଙ୍କୁ ବ୍ୟଥିତ କରିଥିଲା । ଜୀର୍ଣ୍ଣ ସାମାଜିକ ଅବସ୍ଥାର ବିଲୋପ କରି, ନାରୀକୁ ତା'ର ଉପଯୁକ୍ତ ମର୍ଯ୍ୟାଦା ଦେଇ ପୁରାତନ ସମାଜର ଧ୍ୱଂସସ୍ତୂପ ଉପରେ ଏକ ସୁସ୍ଥସମାଜ ଗଠନ ଲାଗି

କୁନ୍ତଳାକୁମାରୀ ନିଜସ୍ୱ ଲେଖନୀ ଚାଳନା କରିଥିଲେ । ତାଙ୍କ ସୃଷ୍ଟି-ସମ୍ପଦରୁ ଏହି ସ୍ୱତନ୍ତ୍ରତା ବେଶ୍ ଉପଲବ୍ଧି କରିହୁଏ ।

କୁନ୍ତଳାକୁମାରୀ ନିଜେ ଜଣେ ନାରୀ । ସୁତରାଂ ନାରୀ ଜୀବନର ହସକାନ୍ଦ, ଆବେଗ-ଉତ୍କଣ୍ଠା, ଆଶା-ନିରାଶାର ଚିତ୍ର ପ୍ରକଟିତ କରିବାରେ ସେ ସଫଳକାମ ହୋଇ ପାରିଛନ୍ତି । ମଧ୍ୟବିତ୍ତ ଜମିଦାରି ପରିବାରଠାରୁ ଆରମ୍ଭ କରି ଦରିଦ୍ର ପରିବାରର ବହୁ ବିଚିତ୍ର ନାରୀ ତାଙ୍କ ଉପନ୍ୟାସ ସଂସାରକୁ ମଣ୍ଡନ କରିଅଛନ୍ତି । କେତେବେଳେ ତାଙ୍କ ଉପନ୍ୟାସର ନାରୀ ସମାଜ ଦୟା, କ୍ଷମା, ସହିଷ୍ଣୁତା ଓ କରୁଣାର ମୂର୍ତ୍ତିମନ୍ତ ବିଗ୍ରହ ତ ଆଉ କେତେବେଳେ କଠୋର ହୃଦୟା, ସ୍ୱାର୍ଥପର ତଥା କୁକର୍ମଜଡ଼ିତା । କେତେକ ନାରୀ ଦେବୀ ତ କେତେକ ଦାନବୀ । ଦୁଷ୍ଟ ଓ ଶିଷ୍ଟର ସମନ୍ୱୟରେ ତାଙ୍କ ସୃଷ୍ଟି ସରସ ସୁନ୍ଦର ହୋଇ ଉଠିଛି । କୁନ୍ତଳା-କୁମାରୀଙ୍କର ବିଶ୍ୱାସ ଥିଲା ଭଲ ବା ମନ୍ଦ ହୋଇ କେହି ଜନ୍ମ ହୋଇ ନ ଥାନ୍ତି । ପରିସ୍ଥିତିରେ ପଡ଼ି କେହି ମନ୍ଦ ହୁଏ । ପୁନଶ୍ଚ ଭଲର ସଂସ୍ପର୍ଶରେ ଆସି ମନ୍ଦ ମଧ୍ୟ ଭଲ ହୁଏ ।

କୁନ୍ତଳାକୁମାରୀଙ୍କ ଉପନ୍ୟାସର ନାରୀ ସମାଜକୁ ମୁଖ୍ୟତଃ ଚାରି-ଭାଗରେ ବିଭକ୍ତ କରାଯାଇପାରେ । ୧—ଦେବୀ ସୁଲଭ ନାରୀ ଚରିତ୍ର, ୨—ସମାଜ ମଧ୍ୟରେ ଅସହାୟା ନାରୀ ସମାଜ, ୩—ଦୁଷ୍ଟ ସ୍ୱାର୍ଥପର ତଥା ଇତର ନାରୀ ସମାଜ ଏବଂ ୪—ଜମିଦାର ବା ଧନୀକ ଶ୍ରେଣୀର ସୁଖାନ୍ୱେଷୀ ନାରୀ ସମାଜ ।

## ୧ । ଦେବୀ ସୁଲଭ ନାରୀ ଚରିତ୍ର :

ଏହି ପର୍ଯ୍ୟାୟରେ 'ଭ୍ରାନ୍ତି' ଉପନ୍ୟାସର ଇନ୍ଦୁମୁଖୀ, ସରଯୂବାଈ; 'ରଘୁଅରକ୍ଷିତ' ଉପନ୍ୟାସର ରସକଳା, ସରସ୍ୱତୀ, ପିତେଇନାନୀ, ତାରାମଣି; 'କାଳିବୋହୂ' ଉପନ୍ୟାସର, ଶାନ୍ତିଲତା ଆଦିକୁ ନିଆଯାଇପାରେ ।

ଇନ୍ଦୁମୁଖୀ—ଶ୍ୟାମପୁର ଜମିଦାର ହରିହର ସେନାପତିଙ୍କର ପତ୍ନୀ ଇନ୍ଦୁମୁଖୀ । ଚନ୍ଦ୍ରର ସମସ୍ତ ମଧୁରତା ନେଇ ତାଙ୍କର ଶରୀର ଗଢ଼ା । ରୂପ ଗୁଣରେ ପରିପୂର୍ଣ୍ଣା ଇନ୍ଦୁମୁଖୀ ବିବାହର ଦଶ ବର୍ଷପାଏ ସନ୍ତାନର ମୁଖ ଦେଖିପାରି ନାହାନ୍ତି । ସେଥିପାଇଁ ତାଙ୍କ ମନରେ ଅଶେଷ ଦୁଃଖ ।

ବହୁ ବ୍ରତ ଉପବାସ ଇତ୍ୟାଦି କରି ତୀର୍ଥାଦି ପର୍ଯ୍ୟଟନପୂର୍ବକ ଏକମାତ୍ର କନ୍ୟାରତ୍ନ ଲାଭ କରିଅଛନ୍ତି । ଚିରଦିନର ଦୁଃଖ ତାଙ୍କର ଅବସାନ ହୋଇଛି । ମାତୃହୃଦୟ ପରିତୃପ୍ତ ହୋଇଛି । ନିଜ ଜମିଦାରୀର ଦେୱାନ ଘନଶ୍ୟାମ ମହାନ୍ତିଙ୍କ ଦୁଇବର୍ଷର ମାତୃହୀନ ଶିଶୁ ଅନଙ୍ଗମୋହନକୁ ମଧ୍ୟ ସେ ନିଜ ପୁତ୍ରପରି ପାଳନ କରିଛନ୍ତି । କନ୍ୟା ଶେଫାଳିକା ଓ ପାଳିତ-ପୁତ୍ର ଅନଙ୍ଗମୋହନର ସୁଖରେ ସେ ସୁଖୀ ଓ ଦୁଃଖରେ ଦୁଃଖୀ ହୋଇଛନ୍ତି । ଏହି ଚରିତ୍ରଟି ଏକ ଆଦର୍ଶ ମାତୃ ସ୍ଥାନୀୟା ଚରିତ୍ର ରୂପେ ପରିଗଣିତ । ଔପନ୍ୟାସିକାଙ୍କ ଭାଷାରେ "ଇନ୍ଦୁମୁଖୀ ହିନ୍ଦୁନାରୀର ଚୂଡ଼ାନ୍ତ ଆଦର୍ଶ ସ୍ୱରୂପ ନ ହେଲେ ହେଁ ଅତିଶୟ ନମ୍ର ପ୍ରକୃତି ଓ ସ୍ୱାମୀପ୍ରତି ଏକାନ୍ତ ଭକ୍ତିମତୀ । ସେ ସରଳା, ଛନ୍ଦକପଟ ତାଙ୍କୁ ଅଜଣା । ଶେଫାଳି ତା'ର ନୟନର ମଣି ସ୍ୱରୂପ, ତାହାକୁ ଅତି ଯତ୍ନରେ ପାଳନ କରିବା ଓ ସୁଶିକ୍ଷା ଦେବା ତାଙ୍କର ନିତ୍ୟ ବ୍ରତ ।" (କୁନ୍ତଳାକୁମାରୀ ଗ୍ରନ୍ଥାବଳୀ—୨ୟ ଖଣ୍ଡ, ପୃ—୪) ମାତାରୂପେ ଓ ସ୍ତ୍ରୀ ରୂପେ ନିଜର ଦାୟିତ୍ୱ ସମ୍ପାଦନ କରି ଏହି ଚରିତ୍ରଟି ଏକ ଆଦର୍ଶ ମାତୃସ୍ଥାନୀୟା ଚରିତ୍ର ରୂପେ ଅବିସ୍ମରଣୀୟ ହୋଇ ରହିଛି ।

**ସରଯୂ ଦିଦି** :—କଲିକତାସ୍ଥିତ ଭବାନୀପାଳିତଙ୍କ ଜ୍ୟେଷ୍ଠା କନ୍ୟା ସରଯୂ, ବାଲ୍ୟବିଧବା । ବାଲ୍ୟକାଳରୁ ହାତରୁ ଶଙ୍ଖା ଓ ମୁଣ୍ଡରୁ ସିନ୍ଦୂର ପୋଛି ସେ ସମାଜର କଳଙ୍କ ସାଜି ନାହାନ୍ତି । ପରନ୍ତୁ ଗୃହ ଶିକ୍ଷୟିତ୍ରୀ ଭାବେ ଜ୍ଞାନଦାତ୍ରୀ ହୋଇ ସମସ୍ତଙ୍କର ଦିଦି ହୋଇ ପାରିଛନ୍ତି । ସ୍ଥାତ୍ରୀ ଶେଫାଳୀକୁ ସେ ଅଶେଷ ସ୍ନେହ କରନ୍ତି । ଶେଫାଳୀର ଅସୁସ୍ଥତାର ଖବର ପାଇ ସେ କଲିକତାରୁ ଡାକ୍ତରଙ୍କୁ ସାଙ୍ଗରେ ନେଇ ହରିହରବାବୁଙ୍କ ଗୃହରେ ପହଞ୍ଚିଛନ୍ତି । ରାତି ରାତି ଅନିଦ୍ରା ରହି ଶେଫାଳୀକୁ ପଥ୍ୟ ଓ ଔଷଧ ଦେଇ ତା'ର ଶୁଶ୍ରୁଷା କରିଅଛନ୍ତି । ଶେଫାଳୀ ମୃତ୍ୟୁମୁଖରୁ ଲେଉଟି ଆସିଛି । ଶେଫାଳୀର ବିବାହରେ ଯୋଗଦାନ କରି ସେ ଅଶେଷ ସୁଖ ଅନୁଭବ କରିଛନ୍ତି । ଏପରି ନାରୀର ତୁଳନା ନାହିଁ ।

**ଶାନ୍ତିଲତା** :—'କାଳିବୋହୂ' ଉପନ୍ୟାସର ଧର୍ମକନ୍ୟା ଓ ଜମିଦାର ପତ୍ନୀ ଶାନ୍ତିଲତା 'ବାଳିକା ଓ ବିଧବା ଆଶ୍ରମ'ର ପ୍ରଧାନ ଶିକ୍ଷୟିତ୍ରୀ । ସ୍କୁଲ କଲେଜରେ ଅଧ୍ୟୟନ କରିନଥିଲେ ମଧ୍ୟ ଗୃହଶିକ୍ଷାଦ୍ୱାରା

ଅନେକ ବିଦ୍ୟାର୍ଜନ କରିଥିଲେ । ଓଡ଼ିଆ, ଇଂରେଜୀ ଓ ବଙ୍ଗଳା ଭାଷାରେ ତାଙ୍କର ପ୍ରବେଶ ଥିଲା । ସ୍ୱାମୀଙ୍କ ମୃତ୍ୟୁ ପରେ ପୁତ୍ର ଓ ପୁତ୍ରବଧୂଙ୍କ ହସ୍ତରେ ସଂସାରର ଭାର ଅର୍ପଣ କରି ଦେଶସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ନାରୀଜାତିର ଉନ୍ନତି ତାଙ୍କ ଜୀବନର ପ୍ରଧାନ ବ୍ରତ ଥିଲା । 'ଶାନ୍ତିକୁଟୀର' ସ୍ଥାପନ କରି ସେଠାରେ ବାଳିକାମାନଙ୍କର ଭାରତୀୟ ପ୍ରଣାଳୀରେ ବିଦ୍ୟା ଓ ଶିଳ୍ପଶିକ୍ଷାର ବନ୍ଦୋବସ୍ତ କରିଥିଲେ ମଧ୍ୟ ପରମ୍ପରା-ଶ୍ରୟୀ ଜନସମାଜ ନିଜର କନ୍ୟା ବା ଭଗିନୀଙ୍କୁ ଏହି ଆଶ୍ରମକୁ ପଠାଇବାକୁ ଇଚ୍ଛୁକ ନଥିଲେ । ଶାନ୍ତିଲତାଙ୍କର ଉଦ୍ୟମ ବିଫଳ ହେବାକୁ ବସିଲା ! ମାତ୍ର ସେଥିରେ ସେ ଭାଙ୍ଗି ପଡ଼ିନଥିଲେ । ଘର ଘର ବୁଲି ଜନସାଧାରଣଙ୍କୁ ଉପଦେଶ ଦେବାକୁ ସେ ପଶ୍ଚାତ୍ପଦ ହେଲେ ନାହିଁ । ଫଳତଃ ଅନାଥା, ଗୃହତ୍ୟାଗିନୀ କେତେକ ବିଧବା ପ୍ରଥମେ ସେଠାରେ ଆଶ୍ରୟ ଲାଭ କଲେ । ଶାନ୍ତିଲତା ସେମାନଙ୍କୁ ମା' ପରି ପାଳନକରି ନାନା ବିଦ୍ୟା ଓ ଶିଳ୍ପଶିକ୍ଷା ଦେଉଥିଲେ । ତାଙ୍କ ଉଦ୍ୟମରେ ଆଶ୍ରମରେ ଶିକ୍ଷାପ୍ରାପ୍ତ ବାଳିକାଗଣ ଭବିଷ୍ୟତରେ ସୁଗୃହିଣୀ ଓ ସୁମାତା ହୋଇ ପରିବାରକୁ ଉଜ୍ଜ୍ୱଳ କରୁଥିଲେ । ଈଶ୍ୱରଙ୍କ ଉପରେ ତାଙ୍କର ଅଗାଧ ବିଶ୍ୱାସ ଥିଲା । ସଞ୍ଜସକାଳେ ସେ ଈଶ୍ୱରଙ୍କର ଉପାସନା କରୁଥିଲେ । ଆପଣା କର୍ମକୁ ସୁଚାରୁ ରୂପେ ସମ୍ପାଦନ କରିପାରିଲେ ସେ ଅଶେଷ ଆନନ୍ଦ ପାଉଥିଲେ । ଅତଏବ ଶାନ୍ତିଲତା ତତ୍କାଳୀନ ସମାଜର ଅମାଆକାଶରେ ଏକ ଉଜ୍ଜ୍ୱଳ ତାରକା ।

**ରସକଳା** :—'ରଘୁ ଅରକ୍ଷିତ' ଉପନ୍ୟାସର 'ରସକଳା' ହୃଷୀକେଶର ସ୍ତ୍ରୀ ରଘୁର ଖୁଡ଼ୀ—ଦୟା ଓ କୋମଳତାର ଜୀବନ୍ତ ମୂର୍ତ୍ତି । ବାପ, ମା' ଛେଉଣ୍ଡ ପୁତୁରା ରଘୁକୁ ସ୍ୱାମୀର ବାରଣ ସତ୍ତ୍ୱେ ସେ ମା' ଭଳି ପାଳିଛି । ଗାଁ ମାଇପଙ୍କ କଥା ସେ କାନକୁ ନେଇ ନାହିଁ । ପୁତୁରା ପାଇଁ ସେମାନଙ୍କ ସଙ୍ଗେ କଳି କରିଛି । ପୁଅ ପରି ସ୍ନେହ ଦେଇ କାନି ଅତୁଆଳରେ ସେ ରଘୁକୁ ମଣିଷ କରିବାକୁ ଆଗେଇ ଆସିଛି । ରଘୁର ସୁଖ, ଦୁଃଖରେ ଭାଗୀ ହୋଇଛି । ମା' ଭାବରେ ରସକଳାର ଜୀବନରେ ପୂର୍ଣ୍ଣତା ଆସିଛି ସତ, ମାତ୍ର ରସକଳା ଜୀବନରେ ସୁଖୀ ହୋଇ ପାରିନି । ତା'ର ସଂସାରରେ କିଛି ଅଭାବ ନଥିଲା । ସୁନାଗହଣା, ପାଟଲୁଗା, ଘରବାଡ଼ି, ଗାଈଗୋରୁ, ପୁତ୍ର, କନ୍ୟା, ସ୍ୱାମୀ—ସବୁକିଛି ସେ ପାଇଥିଲା । ପରିପୂର୍ଣ୍ଣତା'ର ସଂସାର,

ମାତ୍ର ଅଭାବ ଥିଲା ସ୍ୱାମୀ ପ୍ରେମ । ତା'ର ନିଜ ଜୀବନବ୍ୟାଖ୍ୟାନରୁ ତାଙ୍କୁ ବେଶ୍ ଚିହ୍ନିହୁଏ, ଜାଣିହୁଏ—"ବାର ବର୍ଷରୁ କୋଡ଼ିଏ ବର୍ଷ ବୟସ ପର୍ଯ୍ୟନ୍ତ, ନନ୍ଦାନର ମୁଖ ସେ ଦେଖି ନଥିଲା । ସେଥିପାଇଁ ସେ ଶାଶୁ, ନଣନ୍ଦ ଓ ସ୍ୱାମୀଙ୍କର ଅଶେଷ ଗଞ୍ଜଣା ସହିଛନ୍ତି । ସ୍ୱାମୀ ଦ୍ୱିତୀୟ ବିବାହର ପ୍ରସ୍ତାବ ସୁଦ୍ଧା କରି ବସିଥିଲେ । ହେଲେ ନାରାୟଣଙ୍କ କୃପାରୁ ସେହିବର୍ଷ 'ଜନା'ର ଜନ୍ମ ହେଲା । ଆଜ ସୁଦ୍ଧା ତାକୁ ଅନାଇଲେ ଉପକଳାର ସବୁ ପୂର୍ବକଥା ମନେ ପଡ଼ିଯାଏ । କେତେ ପିଟିରେ ମାଡ ସହିଛି, କେତେ ପଣତ କାନରେ ଲୁହ ପୋଛିଛି, ବାଉପଣ୍ଟ କୁଅମୂଳ ଆମ୍ବଗଛ ଛାଇରେ ବସି ସାରା ଦ୍ୱିପ୍ରହର କେତେ ଈଶ୍ୱର ଦେବତା ଡାକିଛି, ତୁଳସୀ ଚଉଁରା ମୂଳେ ହଞ୍ଜିପାଠ ଦେଇ ଦେଇ ମା' ବୃନ୍ଦାବତୀଙ୍କୁ କେତେ ଜଣାଇଛି । ହଟକେଶ୍ୱର, ଭୁବନେଶ୍ୱର, ପୁରୀ—କେଉଁଠିକି ବା ସେ ଯାଇନାହିଁ ? ସେ ବାଞ୍ଝ ବୋଲି ସ୍ୱାମୀ କେତେ ଲାଞ୍ଛନା କରିନାହାନ୍ତି ? ଇଏ କ'ଣ ଦାମ୍ପତ୍ୟ ପ୍ରେମ ? ଇଏ କ'ଣ ସ୍ୱାମୀର ସ୍ତ୍ରୀ ଉପରେ କର୍ତ୍ତୃତ୍ୱ ! ଭତଗଣ୍ଡାଏ ଲୁଗା-ଖଣ୍ଡିଏ ଦେବେ ବୋଲି ଘର ପାଇଟିଠାରୁ ପୁଅ ଝିଅ ସରିକି କଡ଼ାଗଣ୍ଡାରେ ଆଦାୟ କରିବେ ? ଇଏ କେଉଁ ରାଜ୍ୟର ନ୍ୟାୟ ବିଚାର ? ମହାପ୍ରଭୁ ତ ପୁରୁଷ ସ୍ତ୍ରୀ ଦୁହିଁଙ୍କି ଏକା ଗୋଡ଼-ହାତ, ଆଖି-କାନ ଦେଇ ସୃଷ୍ଟି କରେ । ତେବେ ସ୍ତ୍ରୀ କପାଳ ପଥର ତଳେ, ପୁରୁଷ କପାଳ ପଦ୍ମ ତଳେ କାହିଁକି ? ଉପକଳା ଏହାର ସଦୁତ୍ତର ଯୋଗାଇ ପାରିଲା ନାହିଁ । ଭାବିଲା କର୍ମଫଳ । ପୂର୍ବ ଜନ୍ମରେ ପାପ କଲେ ଏ ଜନ୍ମରେ ସ୍ତ୍ରୀ ହୁଅନ୍ତି । (କୁନ୍ତଳାକୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ ପୃ ୧୮୦) ଏଥିରୁହିଁ ଉପକଳା ଜୀବନର ନଗ୍ନରୂପ ପାଠକ ନିକଟରେ ଉଦ୍‌ଭାସିତ ହୋଇ ଉଠେ । ତା' ମନରେ ରାଶିରାଶି ପ୍ରଶ୍ନ ଉଙ୍କିମାରେ ଏବଂ ସେଇଠି ସମାଧି ଲଭେ । ଉତ୍ତର ଖୋଜି ସେ ନିରାଶ ହୁଏ । ଭାଗ୍ୟବାଦ ଉପରେ ବିଶ୍ୱାସ କରି ଦୀର୍ଘ ନିଃଶ୍ୱାସ ଛାଡ଼େ ।

**ସରସ୍ୱତୀ** :—'ରଘୁ ଅରକ୍ଷିତ' ଉପନ୍ୟାସର ଲେଖି ଅର୍ଥଗୃଧ୍ନୁ ଚନ୍ଦ୍ରଶେଖର ଶ୍ରେଷ୍ଠୀଧୁରୀଙ୍କ ସ୍ତ୍ରୀ ସରସ୍ୱତୀ ଦୟା କ୍ଷମା ଓ ପ୍ରେମର ଆକର । ସରସ୍ୱତୀ ଦୟାବତୀ । ଅର୍କ୍ଷିତ ରଘୁକୁ ସେ ଯେଉଁଭଳି ସ୍ନେହ ଶ୍ରଦ୍ଧା ଦେଇଛନ୍ତି । ତାହା ଅତ୍ୟନ୍ତ ଦୁର୍ଲ୍ଲଭ । ଜମିଦାରର ଅତ୍ୟାଚାରରେ ଉତ୍ପୀଡ଼ିତ ରଘୁ ସରସ୍ୱତୀଙ୍କ ଦ୍ୱାରରେ ଉପସ୍ଥିତ ହୋଇଛି । ସରସ୍ୱତୀ ନିର୍ବିଘ୍ନରେ ରଘୁକୁ ମାତୃବତ୍ ସ୍ନେହ ଦେବାକୁ କୁଣ୍ଠାବୋଧ କରିନାହାନ୍ତି । ତାହାର ହାତଧରି

ସରସ୍ୱତୀ ତାହାକୁ ଘରକୁ ନେଇ ତାର ଦୁଃଖ କାହାଣୀ ଶୁଣିଛନ୍ତି । ସରସ୍ୱତୀଙ୍କ ଆଖିରୁ ଲୁହ ବୋହୁଛି । ରଘୁର ଅସାକ୍ଷାତ୍‌ରେ ତାହା ସେ ପୋଛି ଦେଇ କହୁଛନ୍ତି—'ବାପା ତୁ ଏଠି ଥାଆ, କକେଇ ଘରକୁ ଯାଆନା । ରଘୁର ଭୟ ହେଲା । ସେ କହିଲା ନଗଲେ କକେଇ ମାରିବ । ସରସ୍ୱତୀ ଆଶ୍ୱାସ ଦେଇ କହିଲେ—'ଆଜ ମାରିପାରିବ ନାହିଁ । ମୁଁ ସେକଥା ବୁଝିବି ।' (କୁନ୍ତଳା-କୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ ପୃ: ୧୭୩) କେବଳ ସେତିକି ନୁହେଁ । ବାପ ମା' ଛେଉଣ୍ଡ ରଘୁ ପାଇଁ ତାଙ୍କ ଆଖିକୁ ନିଦ ହୋଇନାହିଁ । କିପରି ତା'ର ଏକ ସୁବନ୍ଦୋବସ୍ତ କରିବେ ସେଥିପାଇଁ ସେ ସର୍ବଦା ଚିନ୍ତିତ ହୋଇ ପଡ଼ିଛନ୍ତି । ଶେଷରେ ନିଜର ବିଶ୍ୱସ୍ତ 'ଅନେଇତ' ହାତରେ ରଘୁକୁ ସମର୍ପି ଆଶ୍ୱସ୍ତ ହୋଇଛନ୍ତି । କେବଳ ରଘୁକୁ ନୁହେଁ, ଘରର ଚାକର ପରିଜନ-ମାନଙ୍କୁ ମଧ୍ୟ ସେ ଖବର କରିପାରିଛନ୍ତି । ସେମାନଙ୍କୁ ଯେଭଳି ଗାଳିଦଅନ୍ତି, ସେହିଭଳି ଭଲ ପାଆନ୍ତି । ଚମ୍ପାବୋଉ ପୋଖରୀ ତୁଠରେ କହିଲା—"ସତ କହୁଛୁଲେ ନାମି ! ଆମ ସାନ୍ତାଣୀ ପରି ହିରାଟାଏ । ମୋର ଜନ୍ମାନ୍ତରରେ କଷ୍ଟ ବୋଲି କ'ଣ ଜାଣେନା । ସେଇକ୍ଷଣି ଗାଳି ଦେବେ, ସେହିକ୍ଷଣି ପିଠି ଆଉଁସିବେ । ଚଢ଼େଇ ଛୁଆଟିର ପେଟ ବ୍ୟଥା ଜାଣିବେ । ଇମିତି ମଣିଷ କୋଟିକରେ ଗୋଟିଏ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ ପୃ: ୧୭୦) କେବଳ ଦୟାରେ ନୁହେଁ, ସ୍ୱାମୀଭକ୍ତିରେ ମଧ୍ୟ ସରସ୍ୱତୀଙ୍କର ତୁଳନା ନାହିଁ । ନିଜ ହାତରେ ନ' ତିଅଣ, ଛ' ଭଜା କରି ସ୍ୱାମୀଙ୍କୁ ବଳେଇ ବଳେଇ ଖୁଆଇବାରେ ତାଙ୍କର ଆନନ୍ଦ । ସ୍ୱାମୀଙ୍କ ଯଥେଚ୍ଛାଚାରକୁ ନୀରବରେ ଆଖିବୁଜି ସେ ସହିନେଇଛନ୍ତି । ସ୍ୱାମୀଙ୍କ ଅନ୍ୟାୟ କାର୍ଯ୍ୟରେ ସରସ୍ୱତୀ ଅସୁଖୀ ସତ୍ୟ ମାତ୍ର, ଜନେ ପଦେହେଲେ ତୁଣ୍ଡ ଖୋଲି ସେ ତା'ର ପ୍ରତିବାଦ କରିନାହାନ୍ତି । ସ୍ୱାମୀଙ୍କ ଅନ୍ୟାୟକୁ ସେ ମୁଣ୍ଡ ପାତି ସହିଯାଇ-ଛନ୍ତି । ଆଖି ପାଟି ବୁଜି ସ୍ୱାର୍ଥାନ୍ଧ ସ୍ୱାମୀର ସମସ୍ତ ଅପକର୍ମକୁ ସହ୍ୟ କରିବାରେ ତାଙ୍କର ମହତ୍ତ୍ୱ ପ୍ରକଟିତ । ଫକୀରମୋହନଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ଜମିଦାର ରାମଚନ୍ଦ୍ର ମଙ୍ଗରାଜଙ୍କ ସ୍ତ୍ରୀ ସାଆନ୍ତାଣୀ ଚରିତ୍ର ସହିତ ସରସ୍ୱତୀ ଦେଈଙ୍କୁ ତୁଳନା କରାଯାଇପାରେ । ସାଆନ୍ତାଣୀ ଯେଭଳି ସବୁ ସୁଖ ସୌଭାଗ୍ୟର ଅଧିକାରିଣୀ ହୋଇ ସୁଦ୍ଧା ଜୀବନରେ ସୁଖୀ ହୋଇପାରି ନାହାନ୍ତି ; ସ୍ୱାମୀକର୍ତ୍ତୃକ ଲାଞ୍ଛିତା ହୋଇ ନୀରବରେ ଅଶ୍ରୁ ମୋଚନ କରି ନିଜ ଜୀବନ ଦୀପକୁ ନିଜ ହାତରେ ନିର୍ବାପିତ କରିଛନ୍ତି,

ସେଇଭଳି ସରସ୍ୱତୀ ନିଷ୍ଠୁର ଅର୍ଥପିପାସୁ ସ୍ୱାମୀଙ୍କର ଅନ୍ୟାୟ କାର୍ଯ୍ୟକୁ ନିର୍ବିବାଦରେ ସମର୍ଥନ କରି ହିନ୍ଦୁ ନାରୀର ଆଦର୍ଶ ସ୍ଥାନୀୟ ହୋଇ ଯାଇଛନ୍ତି ।

**ତାରାମଣି**—ଜଗନ୍ନାଥ କବିରାଜଙ୍କ ସ୍ତ୍ରୀ ତାରାମଣି । ନାମ ପରି ଗୁଣରେ ମଧ୍ୟ ସେ ଅତୁଳନୀୟା । ଅରକ୍ଷିତ ବନ୍ଧୁର ଆଶ୍ରୟଦାୟିନୀ—ଏହି ନାରୀ ମନରେ ପର ଆପଣାର ଭେଦଭାବ ନଥିଲା । ଧନୀଦରିଦ୍ର ସମସ୍ତେ ତା' ଚକ୍ଷୁରେ ସମାନ । ଅନ୍ୟର ଦୁଃଖରେ ଦୁଃଖୀ ଓ ସୁଖରେ ସୁଖୀ ହେବା ତାରାମଣିଙ୍କର ଏକ ସ୍ୱଭାବ । ତାରାମଣି ଅସହାୟର ସହାୟ, ନିରାଶ୍ରୟର ଆଶ୍ରୟଦାତ୍ରୀ, ପରୋପକାରିଣୀ । ଦେବଦେବୀଙ୍କ ଉପରେ ମଧ୍ୟ ତାଙ୍କର ଅଗାଧ ବିଶ୍ୱାସ । ବେଶି ପାଠ ପଢ଼ି ନଥିଲେ ମଧ୍ୟ ଓଡ଼ିଆ ଓ ସଂସ୍କୃତରେ ତାଙ୍କର ପ୍ରବେଶ ଥିଲା । ତେଣୁ ସ୍ୱାମୀଙ୍କ ଅନୁପସ୍ଥିତିରେ ସେ ଗୃହାଳର ସାନ ସାନ ପିଲାମାନଙ୍କୁ କ'ଅକ୍ଷର ପଢ଼ାନ୍ତି । ସ୍ୱାମୀଙ୍କ ଠାରୁ ଶିଖି ସେ ଔଷଧ ମଉଷଧି ତିଆରି କରନ୍ତି । ତେଣୁ ପିଲାପିଲିଙ୍କ ଦେହ ଖରାପ ହେଲେ, ତାରାମଣିଙ୍କ ଦୁଆରେ ସ୍ତ୍ରୀଲୋକଙ୍କ ଭିଡ଼ ହୁଏ । ତାରାମଣି ସ୍ୱାମୀଙ୍କୁ ନିଜ କ୍ଷମତା ଅନୁଯାୟୀ କାର୍ଯ୍ୟରେ ସାହାଯ୍ୟ କରନ୍ତି । ସେ ଉପଯୁକ୍ତ ସହଧର୍ମିଣୀ । ପାନ ଭାଙ୍ଗି ଦେବା ଠାରୁ ଆରମ୍ଭ କରି ହାତକୁ ବାଡ଼ି ବଢ଼ାଇ ଦେବାଯାଏ, ସ୍ୱାମୀଙ୍କର ସମସ୍ତ ସେବା ନିଜ ହସ୍ତରେ ସମ୍ପାଦନ କରି ସେ ଅଶେଷ ତୃପ୍ତି ପାଆନ୍ତି । ସ୍ୱାମୀଙ୍କର ପ୍ରକୃତି ସହିତ ତାରାମଣିଙ୍କର ପ୍ରକୃତିର ସାମଞ୍ଜସ୍ୟ ହେତୁ ସେ ଅଧିକ ସୁଖୀ ହୋଇଛନ୍ତି । ତ ମର୍ତ୍ତ୍ୟ ଜୀବନ ତାଙ୍କର ସୁଖମୟ ହୋଇଛି । ସଙ୍ଗୀ ସରସ୍ୱତୀ ନିକଟରେ ନିଜ ସ୍ୱାମୀଙ୍କ ବିଷୟରେ ମନର କଥାକୁ ବ୍ୟକ୍ତ କରିବାକୁ ଯାଇ ସେ କହିଛନ୍ତି—"ହଁ ଭଉଣୀ ସେ ଦେବତା । କିନ୍ତୁ ମୁଁ ତାଙ୍କ ଗୋଡ଼ ତଳକୁ ସରି ନୁହଁ ।" ସୁତରାଂ ନାରୀର ସବୁଠାରୁ ବଳି ଯାହା କାମ୍ୟ ତାହା ସେ ପାଇଥିଲେ । ଦୟା, କ୍ଷମା, ସ୍ନେହ ଓ କରୁଣାର ବିଗ୍ରହ ଏହି ନାରୀମୂର୍ତ୍ତିଟି ଅବାସ୍ତବ ନୁହେଁ, ଫକୀରମୋହନଙ୍କ 'ମାମୁଁ' ଉପନ୍ୟାସର ସାଧୁ ସାହୁ ମହାଜନ ସ୍ତ୍ରୀ 'ଶ୍ରୀମତୀ' ସହିତ ତାରାମଣିଙ୍କୁ ତୁଳନା କରାଯାଇପାରେ । ଉଭୟେ ଭାଗ୍ୟବତୀ ।

**ପିତେଇ ନାନୀ**—'ବନ୍ଧୁଅରକ୍ଷିତ' ଉପନ୍ୟାସର ପିତେଇ ନାମ୍ନୀ ସନ୍ତାନହୀନା, ଆଦ୍ୟ ଯୌବନରେ ବିଧବା । ସଂସାରହୀନା ଏହି ନାରୀଟି

ବୈଧୂଷ ଘରେ ଆଶ୍ରିତା । ଏହି ଚରିତ୍ରଟି ଫକୀରମୋହନଙ୍କ 'ମାମୁଁ' ଉପନ୍ୟାସର ସରସ୍ୱତୀ ଦେଈ ଚରିତ୍ରର ଅନୁରୂପ । ଦାଶରଥି ଦାସଙ୍କ ପରିବାରରେ ବାଲ୍ୟବିଧବା ସରସ୍ୱତୀ ଦେଈ ଯେପରି ସମସ୍ତଙ୍କର ଧାଈମା, ପରିବାରର କେନ୍ଦ୍ରବିନ୍ଦୁ, ଚନ୍ଦ୍ରଶେଖର ବୈଧୂଷଙ୍କ ପରିବାରରେ ପିତେଇ ନାନୀର ଆସନ ଠିକ୍ ସେହିପରି । ସେ ସମସ୍ତଙ୍କର ନାନୀ— ବାପର ନାନୀ, ମାଆର ନାନୀ, ପୁଅଝିଅଙ୍କର ନାନୀ । ସ୍ୱାମୀ, ସନ୍ତାନ, ପରିବାର ତା'ର ନିଜର ହୋଇ ନାହିଁ । ଅଥଚ ସ୍ନେହ, ଦୟା ଓ ସେବାର ସେ ସୌହାର୍ଦ୍ଦ୍ୟମୟୀ ପ୍ରତିମା । ସରସ୍ୱତୀ ଦାଶରଥିଙ୍କ କନ୍ୟା ଚନ୍ଦ୍ରମଣିକୁ ଜୀବନ ଦେଇ ଭଲପାଇଲା ପରି ପିତେଇ ନାନୀ ପ୍ରାଣଭରି ଭଲପାଇଛି ସୀତାକୁ । ବୈଧୂଷଙ୍କ ପିଲାମାନଙ୍କୁ ନିଜ ହାତରେ ଗଢ଼ି ସେ ମଣିଷ କରିଛି । ଅସାଧାରଣ କାର୍ଯ୍ୟକ୍ଷମା ଏହି ନାରୀଟି ଜୀବନ ଯାହାରେ କେବେ ଥକାପଡ଼ି ନାହିଁ । ମା'ର ମମତା ଦେଇ ସେ ସୀତାକୁ ବଡ଼ କରିଛି । ରଘୁନାଥ ସହିତ ସୀତାକୁ ବିବାହ ଦେଇ ସେମାନଙ୍କ ସୁଖମୟ ଭବିଷ୍ୟତ ଦେଖିବ ବୋଲି ସେ ପୁଣି ମନରେ ଆଶା ବାନ୍ଧିଛି, ମାତ୍ର ସମୟକ୍ରମରେ ସୀତା ଜମିଦାର ହରିକାରକୁ ବିବାହ କରି ବୈଧବ୍ୟର ଯନ୍ତ୍ରଣା ଭୋଗ କରିଛି । ତା'ର ଦୁଃଖରେ ଭାଙ୍ଗିପଡ଼ିଛି ପିତେଇ ନାନୀ । ଅଶ୍ରୁମୁଞ୍ଜନ କରି ନୟନର ଜ୍ୟୋତି ହରାଇଛି । ଏହି ଦୃଷ୍ଟିରୁ ପିତେଇ ନାନୀ ସମାଜର ଏକ ବାସ୍ତବବାଦୀ ନାରୀରେ ପରିଗଣିତ ହୋଇ ପାରିଛି ।

## ସମାଜନୀତିରେ ଅସହାୟା ନାରୀସମାଜ :

ଏହି ପର୍ଯ୍ୟାୟରେ 'କାଳବୋହୂ' ଉପନ୍ୟାସର ଲକ୍ଷ୍ମୀ, 'ପରଶମଣି' ଉପନ୍ୟାସର କଳ୍ପନା ଓ 'ରଘୁଅରକ୍ଷିତ' ଉପନ୍ୟାସର ସୀତା ଚରିତ୍ରକୁ ନିଆଯାଇ ପାରେ ।

**ଲକ୍ଷ୍ମୀ**—'କାଳବୋହୂ' ଉପନ୍ୟାସର ନାୟିକା ଲକ୍ଷ୍ମୀ— ଅଚ୍ୟୁତ ମିଶ୍ରଙ୍କର ଏକମାତ୍ର କନ୍ୟା । ବାପ ମାଆଙ୍କର ଅତି ଆଦରର ଦୁଲଣୀ । ସାତବର୍ଷ ବୟସରେ ସର୍ବସୁଲକ୍ଷଣବନ୍ତ ପୀତାମ୍ବର ନାମକ ଦଶବର୍ଷ ବୟସ୍କ ବ୍ରାହ୍ମଣକୁମାର ସହିତ ମହା ଆଡ଼ମ୍ବରରେ ତା'ର

ବିବାହ କାର୍ଯ୍ୟ ସମାପନ ହୋଇଗଲା, ମାତ୍ର ଦୁର୍ଭାଗ୍ୟବଶତଃ ସ୍ୱାମୀ କିଏ ଜାଣିବା ପୂର୍ବରୁ ଦଶବର୍ଷ ବୟସରେ ଲକ୍ଷ୍ମୀ ବିଧବା ହେଲା । ତା' ମୁଣ୍ଡରୁ ସିନ୍ଦୂର ଲିଭିଗଲା, ହାତରୁ ଅଳଙ୍କାର ଗଲା, ଗୋଡ଼ରୁ ଅଳତା ପୋଛିଗଲା । ଦଶବର୍ଷର ଶିଶୁ ସମ୍ପୂର୍ଣ୍ଣ ନିରାଭରଣା ହୋଇ ହବିଷ୍ୟ ଖାଇଲା । ବିଧବାର ନିର୍ଜଳା ଏକାଦଶୀ ପାଳନ କଲା । ତୃଷାରେ ତଣ୍ଟି ଶୁଖି ଅଠା ହେଲା, ମାତ୍ର ପାଣି ଟୋପାଏ ପିଇବାକୁ ଦିଆଗଲା ନାହିଁ ।

ସମୟ ଗଡ଼ିଚାଲିଲା । ଲକ୍ଷ୍ମୀ କ୍ରମେ ବଡ଼ହେଲା । ତୀର୍ଥାଦି ପର୍ଯ୍ୟଟନ କରି ସେ କିଛି ଜ୍ଞାନ ଆହରଣ କଲା । ତଥାପି ତା' ମନରେ ସାନ୍ତ୍ୱନା ଆସିଲା ନାହିଁ । ସାମାଜିକ ନିୟମର ଶୃଙ୍ଖଳରେ ବାନ୍ଧି ହୋଇ ତା ମନରେ ଅନେକ ପ୍ରଶ୍ନ ଉଙ୍କି ମାରିଲା । "ସେ କିମ୍ପା ଆଜି ଏକ ନିରାଶ୍ରୟ ନିଃସଙ୍ଗ ଜୀବନ ବହନ କରି ଏ ଜଗତରେ ବଞ୍ଚିଛି ? କିମ୍ପା ଜଗତର ସମଗ୍ର ଭୋଗ ତା' ପାଇଁ ବାରଣ ? କିମ୍ପା ନାରୀତ୍ୱ, ମାତୃତ୍ୱରୁ ଆଜି ସେ ବଞ୍ଚିତ ? କି ଦୋଷରୁ କି ପାପରୁ ଏ ଦଣ୍ଡବିଧାନ ? ଲକ୍ଷ୍ମୀ କେବଳ ବିବାହିତା ତାହାହିଁ ଜାଣିଥିଲା । ବିବାହ ପାତିବ୍ରତ୍ୟ ଇତ୍ୟାଦି କୌଣସି ବିଷୟ ସେ ବୁଝିପାରିଲା ନାହିଁ । ବିବାହ କ'ଣ ? କାହାକୁ ସେ ବିବାହ କରିଥିଲା ? କିଏ ତାହାର ପତି ? ତାହାର ପତିବ୍ରତ୍ୟର ଦାବୀ କିଏ କରେ ? ଏହା ସେ ଏକାନ୍ତରେ ପୋଖରୀ ହୁଡ଼ାରେ ବସି ଭାବେ । ସଞ୍ଜ ବୁଡ଼ିଯାଏ, ଦୀପ ଲାଗେ । ଠାକୁର ଘରେ ଆରତି ହୁଏ । କିନ୍ତୁ ଲକ୍ଷ୍ମୀ ଉଠିପାରେ ନାହିଁ । ସେ ଅପାର ଚିନ୍ତାରେ ମଗ୍ନ ଥାଏ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ ପୃ-୮୬) ପୁନଶ୍ଚ ପ୍ରିୟ ସଙ୍ଗିନୀ ଦୁଲି ନିକଟରେ ସେ ପ୍ରକାଶ କରିଛି—"ଭାବୁଛି ଏକାଦଶୀ କିଏ ଗଢ଼ିଲା, ତା' ପ୍ରାଣରେ କ'ଣ ଟିକିଏ ଦୟା ନଥିଲା ? ମୋ ଭଳିକା ଝିଅର ଦୁଃଖ ବିଚୁର ବେଳକୁ କ'ଣ ବିଧାତା ତାଙ୍କୁ ପଥର କରିଥିଲା ? × × ଭଉଣୀ, ମୋ ହିଆ ଭିତରେ ନିଆଁ ଜଳୁଛି, ଆଉ ତୁ କହୁଛୁ ଦିଅଁ ଦେବତା ଅମଙ୍ଗଳ କରିବେ । ମୋ' ପାଇଁ ମଙ୍ଗଳ ଆଉ କ'ଣ ଅଛି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ ୮୬) ଲକ୍ଷ୍ମୀ ମନରେ ଉଦ୍ରେକ ହୋଇଥିବା ପ୍ରଶ୍ନରାଜି ସେଇ ମନ ଭିତରେ ସମାଧି ଲଭୁଛି । ତା'ର ଉତ୍ତର ସେ ଖୋଜି ପାଇନାହିଁ । ସମାଜ ବିରୁଦ୍ଧରେ ସେ ବିଦ୍ରୋହ କରିପାରି ନାହିଁ ।

କାରଣ ସେ ନାରୀ । ପାଟି ଫିଟାଇବା ତା' ପକ୍ଷରେ ପାପ । ବିଦ୍ରୋହ ତ ଅନେକ ଦୂରର କଥା । କୁସଂସ୍କାରଗ୍ରସ୍ତ ସମାଜର ଶାସନଯନ୍ତ୍ରରେ ଲକ୍ଷ୍ମୀ କେବଳ ହନ୍ତସନ୍ତ ହୋଇନି, ପିତାଙ୍କ ମୃତ୍ୟୁ ପରେ ସେ ଏକାନ୍ତ ଅସହାୟା ହୋଇପଡ଼ିଛି । ବିପୁଳ ଧନରତ୍ନ ଓ ଅସଂଖ୍ୟ ହିତାକାଂକ୍ଷୀଙ୍କ ଗହଣରେ ରହି ମଧ୍ୟ ଲକ୍ଷ୍ମୀ ଶାନ୍ତି ପାଇପାରି ନାହିଁ । ପ୍ରକୃତ ମମତାର ଅଭାବ ସେ ଅନୁଭବ କରିଛି । ନିଜର ଅପରୂପ ଲାବଣ୍ୟ ଏବଂ ପିତାଙ୍କର ଅଜସ୍ର ଧନସମ୍ପତ୍ତି ଯୋଗୁ ସେ ପଦେ ପଦେ ବିପଦଗ୍ରସ୍ତ ହେବାର ସୂଚନା ପାଇଛି । "ରୂପ, ଯୌବନ ଧନ ଶ୍ରୀସମ୍ପନ୍ନା ଷୋଡ଼ଶବର୍ଷୀୟା ଯୁବତୀ ପୁଣି ପରିବାରର ନାରୀବର୍ଗରେ ଥିଲା ହିଂସା, ଆଉ ଯୁବକବର୍ଗର ଆସକ୍ତି । ଯାହାର ଏତଦୁଭୟ କାରଣ ନ ଥିଲା ସେ ଥିଲା ଲକ୍ଷ୍ମୀର ଧନର ଗ୍ରାହକ । କିନ୍ତୁ ଲକ୍ଷ୍ମୀର ଉପାୟାନ୍ତର ନାହିଁ । କାରଣ ପରିବାରରେ ଗୋଟିଏ ମୁରବି ନଥିଲେ । ଅଯଥା କର୍ତ୍ତୃତ୍ୱକାରୀ ଅନ୍ନଦାସର ସଂଖ୍ୟା ଊଣା ନଥିଲା । ସେହିମାନଙ୍କର ଉପଦ୍ରବରେ ପରିବାରର ସୁଖଶାନ୍ତି ଏକାବେଳେକେ ନଷ୍ଟ ହୋଇ ଯାଉଥିଲା ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା ଦ୍ୱିତୀୟ ଖଣ୍ଡ—ପୃ ୯୭) ।

ପିତାଙ୍କ ମୃତ୍ୟୁ ପରେ ସମବୟସୀ ବିମାତାମାନଙ୍କର ସମାଜ ବିରୋଧୀ କାର୍ଯ୍ୟକୁ ସେ ଲକ୍ଷ୍ୟ କରିଛି । ଏପରି ସ୍ଥଳେ ଲକ୍ଷ୍ମୀ ଚରିତ୍ରରେ ସଂଯମ ବ୍ରହ୍ମଚର୍ଯ୍ୟାଦି ଗୁଣର ପୂର୍ଣ୍ଣବିକାଶ କଷ୍ଟକର ହେଲେ ମଧ୍ୟ ଧର୍ମ-ପଥରେ ସ୍ଖଳିତ ହୋଇ ସେ ଅବାଟକୁ ଗୋଡ଼ ବଢ଼ାଇ ନାହିଁ । ସେଥିପାଇଁ ତାକୁ ପ୍ରତି ମୁହୂର୍ତ୍ତରେ ସଂଗ୍ରାମର ସମ୍ମୁଖୀନ ହେବାକୁ ପଡ଼ିଛି । ଭଲ ରହିବାକୁ ଆପ୍ରାଣ ଉଦ୍ୟମ କରିଥିଲେ ମଧ୍ୟ ନିଶାଗ୍ରସ୍ତ ନବୀନର ଘନଘନ ଅତ୍ୟାଗ୍ରହ ଲକ୍ଷ୍ମୀକୁ ବିବ୍ରତ କରିଛି । ତେଣୁ ଗୃହ ପରିତ୍ୟାଗ କରି ସେ ମହିଷ ସନ୍ନ୍ୟାସ ବ୍ରତ ଗ୍ରହଣ କରିବ ବୋଲି ମନସ୍ଥ କରିଛି । ଔପନ୍ୟାସିକଙ୍କ ଭାଷାରେ—"ଲକ୍ଷ୍ମୀ ହୃଦୟର ଆବେଦନ ମାନିଲା । ଦିନେ ଅଲକ୍ଷିତ ଗୃହତ୍ୟାଗ କରି ବାଳକ , ବେଶରେ ଯେଉଁଆଡ଼କୁ ଦୁଇଆଖି ଗଲା ଚାଲିଗଲା । ଆଜି ସେ ସଂସାରରେ ସର୍ବସ୍ୱହୃତା, କିନ୍ତୁ ତାହାର ମନରେ ଥିଲା ଅପାର ବଳ, ଦୃଢ଼ବିଶ୍ୱାସ ଥିଲା ଈଶ୍ୱରଙ୍କ ଉପରେ, ଆଉ ଏକାନ୍ତ ଆକାଂକ୍ଷା ଥିଲା ନିଜର ସତୀତ୍ୱ ରକ୍ଷା । ସେହି ସତୀତ୍ୱର ଗୌରବ

ରକ୍ଷାର୍ଥେ ବିଶାଳ ଜଗତରେ ସେ ଆଜି ଏକାକିନୀ ।” (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ ପୃ-୯୮) ।

ନିଜକୁ ପବିତ୍ର ଋଷି ବଭ୍ରୁନାମ ଧ୍ୟାନପୂର୍ବକ ଜୀବନ ଅତିବାହିତ କରିବା ଉଦ୍ଦେଶ୍ୟରେ ଲକ୍ଷ୍ମୀ ସେଦିନ ଗୃହ ତ୍ୟାଗ କରିଛି । ସନ୍ନ୍ୟାସିନୀ ରାଧାର ଅପୂର୍ବ ଭକ୍ତି ଓ ଐକାନ୍ତିକ ସାଧନାରେ ଆକୃଷ୍ଟ ହୋଇ ସେ ପରମ ରମଣୀୟ ଧାମ ବୃନ୍ଦାବନ ଯାତ୍ରା କରିଛି । ନିତ୍ୟ ଭଜନ କୀର୍ତ୍ତନ ଓ ଯମୁନାର ପବିତ୍ର ଜଳରେ ସ୍ନାନକରି ଲକ୍ଷ୍ମୀ ନବଜୀବନ ଲାଭ କରିଛି । ସେ ଆନନ୍ଦରେ ବିହ୍ୱଳ ହୋଇଛି । ମାତ୍ର ସେ ସୁଖ ତା’ର ବେଶିଦିନ ରହିନାହିଁ । ସନ୍ନ୍ୟାସିନୀମାନଙ୍କର ଅନ୍ତର୍ରୂପକୁ ଉଦ୍‌ଘାଟନ କଲାପରେ ଲକ୍ଷ୍ମୀର ହୃଦୟ ଘୃଣାରେ ପୁରିଉଠିଛି । ଭଣ୍ଡ ତପସ୍ୱିନୀମାନଙ୍କର ଗୁପ୍ତ-ଲୀଳା ତାକୁ ବିବ୍ରତ କରିଛି । ରାଧାତାକୁ ନିନ୍ଦିଛି, ସମାଜକୁ ଭର୍ତ୍ସନା କରିଛି ମାତ୍ର ନିଜର ପନ୍ଥା ସେ ଖୋଜି ପାଇନାହିଁ । ଯମୁନା କୂଳରେ ନିଭୃତ ସ୍ଥାନରେ ବସି ଲକ୍ଷ୍ମୀ ଅଶ୍ରୁ ଗଡ଼ାଇବା ସଙ୍ଗେ ସଙ୍ଗେ ତା’ର ଅତୀତ ଓ ବର୍ତ୍ତମାନକୁ ବିଶ୍ଳେଷଣ କରିଛି । ବିପଦ ପରେ ବିପଦ ତା’ ଜୀବନକୁ ବିଷାଦଗ୍ରସ୍ତ କରିଛି । ଦିନେ ସେ ଗୃହତ୍ୟାଗ କରିଥିଲା । ଆଜି ବୈଷ୍ଣବୀର ଆଶ୍ରମ ତ୍ୟାଗ କରିଛି । ଆଉ ସେ ଫେରିବ ନାହିଁ । ପୁଣ୍ୟତୋୟା ଯମୁନା ବକ୍ଷରେ ସେ ଚିର ଆଶ୍ରୟ ନେବ, ଏହାହିଁ ତା’ର ସଂକଳ୍ପ । ପରକ୍ଷଣରେ ତା’ ମନରେ ଜାଗିଛି—“ଆତ୍ମହତ୍ୟା ମହାପାପ ; କିନ୍ତୁ ସତୀତ୍ୱ ବିକ୍ରୟ କି ତହୁଁ ପାପ ନୁହେଁ । ଆର୍ଯ୍ୟ ରମଣୀର ହୃଦୟ କି ସତୀତ୍ୱ ବିନିମୟରେ ସୁଖ ସୌଭାଗ୍ୟ ଖୋଜେ ? ନା ଲକ୍ଷ୍ମୀ କିଛି ଖୋଜେ ନାହିଁ । ଲକ୍ଷ୍ମୀ ଖୋଜେ ଧର୍ମ ! ଧର୍ମସକାଶେ ସେ ଗୃହତ୍ୟାଗ କରିଥିଲା । ଗୃହରେ ଥିଲା ନାଗସର୍ପ ନିଗଡ଼ନ, ଆଉ ଏଠାରେ ଭେଟିଲା କାଳୀୟ ଭୁଜଙ୍ଗ ବିଲୋଚନ । ଦାରୁଣ ନୈରାଶ୍ୟରେ ଲକ୍ଷ୍ମୀ ଏଥର ଆତ୍ମହତ୍ୟା ସକାଶେ ଅଗ୍ରସର ହେଲା ।” (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ, ପୃ-୧୦୧) ।

କିନ୍ତୁ ଲକ୍ଷ୍ମୀ ମରିପାରିଲା ନାହିଁ । କୁନ୍ତଳାକୁମାରୀ ସେଇଠି ତା’ ଜୀବନରେ ପୂର୍ଣ୍ଣଚ୍ଛେଦ ଟାଣିଲେ ନାହିଁ । ଲକ୍ଷ୍ମୀକୁ ନେଇ ସମାଜର ସଂସ୍କାର କରିବାକୁ ସେ ଆଗେଇ ଆସିଲେ । ଯମୁନା ବକ୍ଷରୁ ସୁପଣ୍ଡିତ ସ୍ୱାମୀ ସଦାନନ୍ଦ ମୂର୍ଚ୍ଛିତା ଲକ୍ଷ୍ମୀକୁ ଉଦ୍ଧାର କରି ତା’ର ଉପଯୁକ୍ତ ସେବା

ଶୁଶ୍ରୂଷା କରୁଛନ୍ତି । ଲକ୍ଷ୍ମୀ ବଞ୍ଚୁଛି । ତା'ର ପୁନର୍ଜନ୍ମ ହୋଉଛି । 'ଶାନ୍ତି-ଲତାଙ୍କ ସହାୟତାରେ ସେ ପାଠ ପଢ଼ୁଛି । ପ୍ରବନ୍ଧ ଲେଖୁଛି । ତା'ର ସୁନାମ ରଟିଛି । ଆଶ୍ରମରେ ରହି ସେ ସୁଖୀ ହୋଇଛି ।

ନିଜର ସୁନାମ ହେତୁ ଲକ୍ଷ୍ମୀ ଗର୍ବୀ ହୋଇନାହିଁ । ଆଶ୍ରମର ସମସ୍ତ କର୍ମ ସ୍ୱହସ୍ତରେ ସମ୍ପାଦନ କରି ଜନ୍ମଜନ୍ମାନ୍ତର ପାପ ଖଣ୍ଡନ କରିବାକୁ ସେ ଚାହିଁଛି । ଧର୍ମଭାବରେ ତା'ର ହୃଦୟ ପରିପୂର୍ଣ୍ଣ । ନମ୍ରତା ଓ ବିନୟ ଯୋଗୁ ଲକ୍ଷ୍ମୀଠାରେ ସୌନ୍ଦର୍ଯ୍ୟ ପ୍ରକଟିତ ହୋଇଛି । ଶାନ୍ତିଲତାଙ୍କଠାରୁ ଶିକ୍ଷା ପାଇ ସେ ବୁଝିଛି ତା'ର ଜୀବନ ବ୍ୟର୍ଥ ନୁହେଁ, ଅସାର ନୁହେଁ । ଭଗବାନ ତା'ଠାରେ ଓଡ଼ିଶାର ନାରୀ ସମାଜର ଉନ୍ନତି କଳ୍ପେ କାର୍ଯ୍ୟ କରିବା ପାଇଁ ଶକ୍ତି ଦେଇଛନ୍ତି ।

ଲକ୍ଷ୍ମୀ ଉତ୍ସାହରେ ଲାଗିପଡ଼ିଲା । ଓଡ଼ିଶାର କଲ୍ୟାଣ ଓ ମଙ୍ଗଳ କରିବାରେ ସେ ବ୍ରତୀ ହେଲା । ନିଜ ଜୀବନର ସବୁ ସୁଖଦୁଃଖ ଭୁଲିଗଲା । 'ଶାନ୍ତିକୁଟୀ'ର ଲକ୍ଷ୍ମୀର ହସ୍ତସ୍ପର୍ଶରେ ହସିଉଠିଲା । ବାଳିକା ଓ ବିଧବା-ମାନେ ତା'ର ଶିକ୍ଷା ସାଧନାରେ ଉନ୍ନତ ଓ ପବିତ୍ର ହେଲେ । ଆର୍ତ୍ତର ସହାୟ, ଅନାଥର ମାତା, ଦୁଃଖୀର ସାନ୍ତ୍ୱନାଦାତ୍ରୀ ଲକ୍ଷ୍ମୀର ଜୀବନ ଧନ୍ୟ ହେଲା ।

ଲକ୍ଷ୍ମୀକୁ ଦେଶ ସେବିକା ଭାବେ ନିଯୁକ୍ତ କରି ଔପନ୍ୟାସିକା କୁନ୍ତଳାକୁମାରୀ ନୀରବ ହୋଇପାରି ନାହାନ୍ତି । ତାଙ୍କର ସଂସ୍କାରୀ ମନ ଲକ୍ଷ୍ମୀକୁ ଚନ୍ଦ୍ରୋଦୟ ସହିତ ବିବାହ କରାଇ ନିଶ୍ଚିନ୍ତ ହୋଇଛି । ଅନ୍ଧ-ବିଶ୍ୱାସ ଓ କୁସଂସ୍କାରଗ୍ରସ୍ତ ସମାଜରେ ବିଧବା ବିବାହର ପ୍ରଚଳନ କରାଇ ସେ ସମାଜକୁ ଏକ ନୂତନ ଦିଗଦର୍ଶନ ଦେଇଛନ୍ତି । ଏହା କମ୍ ଗୌରବର କଥା ନୁହେଁ ।

**ଲଳିତା**--'ପରଶମଣି' ଉପନ୍ୟାସର ନାୟିକା ଲଳିତା । ବାପମା'ଙ୍କର ଅଲିଅଳି କନ୍ୟା । ଭଲ ବର, ଭଲଘର ଦେଖି ବାପମା' ତାକୁ ବିଭା ଦେଇଛନ୍ତି । ଆଦ୍ୟ ଯୌବନରେ ପାଦ ଦେଇ ଦେଇ ଲଳିତା ନବବଧୂ ସାଜି ଶାଶୁଘର ଯିବାକୁ ସଜ ହୋଇଛି । ପ୍ରାଣରେ ନବ ଉନ୍ମାଦନା, ମନରେ ଅସରନ୍ତି ସ୍ୱପ୍ନ । କଳ୍ପନାର ସ୍ରୋତରେ ଭାସି ଭାସି

ଯାଇ ଲଳିତା ପାଦ ଦେଇଛନ୍ତି ଶାଶୁଘରେ । ମାତ୍ର ବାସ୍ତବତାର ଶିଳାରେ ସବୁ ସ୍ୱପ୍ନ ତା'ର ଭାଙ୍ଗି ଚୂର୍‌ମାର ହୋଇଯାଇଛି । ଶାଶୁଘରର କାଏଦା କଟକଣାରେ ବାନ୍ଧହୋଇ ସେ ଛଟପଟ ହୋଇଛି । ଶାଶୁ, ନଣନ୍ଦ ଓ ଜା'ର ଗଞ୍ଜଣାରେ ସରଳ ନାରୀ ଜୀବନର ସମସ୍ତ କୋମଳତା ନଷ୍ଟ ହୋଇଯାଇଛି । ଶାଶୁଘର ତାକୁ କଏଦୀଖାନା ପରି ବୋଧ ହୋଇଛି । ସକାଳୁ ସଞ୍ଜଯାଏ ଘରକାମ ତଥା ଶାଶୁ, ନଣନ୍ଦ ଓ ଜାଆଙ୍କ ସେବା କରି ମଧ୍ୟ ସେ କାହାରି ଶ୍ରଦ୍ଧାଭାଜନ ହୋଇପାରି ନାହିଁ । ତଥାପି ତା'ପାଇଁ ଶାଶୁଘରେ ଗୋଟିଏ ଆକର୍ଷଣ—ତା'ର ସ୍ୱାମୀ । ସ୍ୱାମୀ ବଂଶୀଧର କଟକରେ ଚାକିରି କରନ୍ତି । ଛୁଟିରେ ଘରକୁ ଆସନ୍ତି । "ଲଳିତା ଆଶା ରଖିଛି ସ୍ୱାମୀ ସହ କଟକ ଗଲେ ତା'ର ସବୁ ଦୁଃଖ ଅପସରି ଯିବ ।" ଲଳିତା ନୂତନ ଆଶା ନୂତନ ଆନନ୍ଦରେ ବୁଡ଼ିଗଲେ । "ସ୍ୱାମୀ ଏଥର ନିଶ୍ଚୟ ସଙ୍ଗରେ ନେଇଯିବେ । ବଡଜା ଉମାଙ୍କର ଈର୍ଷା ଦୃଷ୍ଟିରୁ ଏଥର ତ୍ରାହି ମିଳିବ । ନଣନ୍ଦ ତମାଳମା ଏଥର କାହା ଉପରେ ଚଡ଼ାଉ କରିବ ? ଶାଶୁ ଆଉ କାହା ଉପରେ ଗରଗର ହେବେ ? ଲଳିତା ଭଲରୂପେ ବୁଝିଥିଲ ଓ ଘରେ ତାକୁ ସ୍ନେହ ଦୃଷ୍ଟିରେ ଦେଖନ୍ତି କେବଳ ଜଣେ । ସେ ଜଣକ ତା'ର ସ୍ୱାମୀ । ତା' ଜୀବନ ଦେବତା । ଆଉ ସେତକ ଭାବି ଲଳିତା ମହାସୁଖୀ । ଶାଶୁ, ନଣନ୍ଦ, ଜା' କ୍ଷୁଣ୍ଣିଲେ ଗୁହାଳୁ, ନୋହିଲେ ନାହିଁ । ସ୍ୱାମୀ ତ ଆଦର କରନ୍ତି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ, ପୃ-୧୧୬) ।

ମାତ୍ର ଲଳିତାର ଆଶା ଆଶାରେ ହିଁ ରହିଛି । ଶାଶୁଙ୍କ ପାଇଁ ସେ ସ୍ୱାମୀସହ ଏକତ୍ର ରହିପାରି ନାହିଁ । ଫଳତଃ ସ୍ୱାମୀ ବଂଶୀଧର କୁକର୍ମରେ ଲିପ୍ତରହି ଲଳିତାକୁ ଅବହେଳା କରିଛି । ଲଳିତା ଜୀବନର ସୁଖ ସ୍ୱପ୍ନ ଭାଙ୍ଗିଯାଇଛି । ତା'ର ଦାମ୍ପତ୍ୟ ଜୀବନ ହଳାହଳମୟ ହୋଇ ଉଠିଛି । ମନେ ମନେ ସେ ତା'ର ନାରୀ ଜୀବନକୁ ନିନ୍ଦାକରିଛି—"ସେ ପରା ଝିଅ ! ତା ଭାଗ୍ୟ ପରା ପଥର ତଳେ । ସତେ ପଥର ଲେଉଟିବ, ତା ଭାଗ୍ୟ ଫେରିବ ? ଗଭୀର ଦୀର୍ଘଶ୍ୱାସରେ ଲଳିତା ହୃଦୟ ବିଦୀର୍ଣ୍ଣ ହେଲା । ପୁଣି ଭାବିଲା ସେ'ତ ମଣିଷ, ତା ପାଇଁ ମଣିଷ ଏତେ ଦୁଃଖ କାହିଁ ଖଞ୍ଜିଲ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ-ପୃ—୧୧୫)· ପୁନଶ୍ଚ ଦୁର୍ଦ୍ଦଶା-ପାଇଁ ନିଜ ଭାଗ୍ୟକୁ ସେ ଦାୟୀ କରିଛି । ଭାବିଛି ପୂର୍ବ ଜନ୍ମର ଏ କର୍ମଫଳ,

ଏମିତି ଖାନଦାନୀ ନ ହୋଇଥିଲେ ବଡ଼ଘର ବରପାଇ ସେ ନିଜେ ସୁଖୀ ବୋଲି କ'ଣ ଜାଣିପାରନ୍ତା ନାହିଁ ।

ସ୍ୱାମୀ ସୋହାଗରୁ ବଞ୍ଚିତା ହୋଇ ଲଳିତା ଜୀବନକୁ ଅସାର ମଣିଛି । ଜୀବନର ଭାର ତାପାଇଁ ଦୁର୍ବିସହ ହୋଇ ପଡ଼ୁଛି । ତାର ଆଶାର କୁସୁମ ମଉଳି ଯାଉଛି । ଏକ ବିରାଟ ଦୁନିଆଁରେ ସେ ନିଜକୁ ଅସହାୟା ମଣିଛି । ତା'ର ଦୁଃଖ ବୁଝିବାକୁ, ବେଦନାରେ ସହାନୁଭୂତି ଜଣାଇ 'ଆହା' ପଦ କହିବାକୁ କେହି ଆଗେଇ ଆସିନାହିଁ । ଧନଗର୍ବି ଦାସୀପରି ଖଟିଖଟି ସେ କାହାର ମନ ନେଇପାରି ନାହିଁ । ତା'ପାଇଁ ସମସ୍ତେ ନିଷ୍ଠୁର । ସ୍ୱାମୀ—ଯାହା ଆଶାରେ ସେ ସବୁ ଲାଞ୍ଛନା ନିର୍ଯ୍ୟାତନାକୁ ହସି ହସି ସହ୍ୟ କରିଛି, ଯାହାପାଇଁ ସେ ସ୍ୱର୍ଗସୁଖ ପାଇବ ବୋଲି ଆଶା-କରିଥିଲା, ସେ ଶେଷରେ ଚରିତ୍ରହୀନ ନିଶାଖୋର ହୋଇଛି । ତେଣୁ ସେ ବଞ୍ଚିବ ବା ଆଉ କାହା ପାଇଁ ? ମରିବାର ବାସନା ନେଇ ସେ ଆଗକୁ ପାଦ ପକାଇଛି । ମାତ୍ର ପରକ୍ଷଣରେ ଜୀବନ ତାକୁ ବଡ଼ ମଧୁର ଲାଗିଛି । ଜୀବନ ମରଣର ଦ୍ୱନ୍ଦ୍ୱ ଭିତରେ ସେ ଟିକିଏ ଅଟକି ଯାଇଛି । "ଲଳିତା ଇତସ୍ତତଃ ହେଲା । ତାର ନବୀନ ବୟସ, କୋମଳ ମନ । କିନ୍ତୁ ପରକ୍ଷଣରେ ମନେ ପଡ଼ିଲା ଶାଶୁ, ନଣନ୍ଦ, ସ୍ୱାମୀ, ଶାଶୁ ଅତ୍ୟାଚାରୀ, ନଣନ୍ଦ ନିଷ୍ଠୁର ଆଉ ସ୍ୱାମୀ ! ଲଳିତାର ହୃଦୟ ସ୍ତବ୍ଧ ହେଲା, ହାତଗୋଡ଼ କାଠପରି ଲାଗିଲା । ସେ ଭାବିପାରିଲା ନାହିଁ, ଯେ ତାର ସ୍ୱାମୀ, ହୃଦୟର ଦେବତା । ତା'ର ସମସ୍ତ ଆଶା ଆକାଂକ୍ଷାର ଚରମ, ତାହାର ପ୍ରେମର ପ୍ରଭୁ, ସେ ଆଜି ବିଶ୍ୱାସ ଘାତକ । ସେ ଅନ୍ୟାସକ୍ତ, ସେ ସୁରାପାୟୀ । ଲଳିତାର ମୁଣ୍ଡ ବୁଲେଇଲା, ଆକାଶ ଅନ୍ଧାର ଦିଶିଲା, ପୃଥିବୀ ଅନ୍ଧାର ଦିଶିଲା । ଆଉ ଠାବ ନାହିଁ, ଆଉ ଆଶା ନାହିଁ । ଆଉ ସୁଖଶାନ୍ତି ନାହିଁ । ବିଶାଳ ଶୂନ୍ୟ ଅନ୍ଧକାରରେ ଲଳିତାର ସମୁଦାୟ ସତ୍ତା ବିଲୀନ ହେଲା । ସେ ନିଃଶବ୍ଦରେ ତେଜା ପଥର ତଳକୁ ଓହ୍ଲାଇଗଲା । ଏ ଜୀବନର ବ୍ୟର୍ଥତା କିଏ ଦେଖିବ ? ଏ ଜୀବନ ଯଜ୍ଞ କାହା ଉଦ୍ଦେଶ୍ୟରେ ? ଆଜି ତାହାର ସବୁ ଶେଷ । କେହି ଜାଣିବେ ନାହିଁ । କେହି ଦେଖିବେ ନାହିଁ, କେହି ବୁଝିବେ ନାହିଁ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ—୧୨୨)

ଲଳିତା ମରିବାକୁଯାଇ ମରିପାରିଲା ନାହିଁ । ଈଶ୍ୱର ବୃନ୍ଦାବନଙ୍କ ଡାକରେ ଚେତାପାଇ ସେ ମରଣ ଦୁଆରୁ ଫେରି ଆସିଛି । ଗୃହ ଅଧରେ ଲୁଚି ଈଶ୍ୱର ସାଙ୍ଗରେ ବାପଘରକୁ ଚାଲିଯାଇଛି । ବାପଘରେ ତା'ର କିଛି ଅଭାବ ରହିନାହିଁ । ଖିଆ ପିଆ, ଲୁଗାପଟା, ସାନ ଭାଇ-ଭଉଣୀର ଆନ୍ତରିକତା, ବାପ ମା'ଙ୍କର ସ୍ନେହ ଆଦର ସବୁ ସେ ପାଉଛି । ମାତ୍ର ସବୁ ପାଇବା ମଧ୍ୟରେ ସ୍ୱାମୀନୁରାଗିଣୀ ଲଳିତା କିଛି ନ ପାଇବାପରି ବୋଧ କରୁଛି । "ଏଠାରେ ଦୁଃଖ ଯାତନାର ନ ଥିବାରୁ ବେଶି ମନେ ପଡ଼ିଲେ ତାର ସ୍ୱାମୀ । ଲଳିତାର ସ୍ୱାମୀ ହେଲେ ଜ୍ଞାନଧ୍ୟାନ, ଜପାମାଳି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ—ପୃ-୧୨୬)

ପତିଭକ୍ତା ଲଳିତା ବାପଘରେ ବେଶିଦିନ ରହିପାରିନି । ପିତାଙ୍କ ସଙ୍ଗେ ନିଜ ସ୍ୱାମୀଙ୍କ ପାଖକୁ କଟକ ଯାଇଛି । ବହୁଦିନ ପରେ ବଂଶୀଧର ନିଜ ସ୍ତ୍ରୀ'କୁ ଦେଖି ଖୁସି ହୋଇଛନ୍ତି । ଲଳିତା ନିଜ ଜୀବନର ସାର୍ଥକତା ଅନୁଭବ କରୁଛି । "ଏପରି ମିଳନ କେବେ ହୋଇନାହିଁ, କେବେ ହେବାର ନୁହେଁ । ଏ ସ୍ୱପ୍ନାତୀତ ମିଳନ । ତୃଷିତା ଚାତକୀ ପକ୍ଷରେ ଏ ନବ ବାରିଦ ବିନ୍ଦୁ । ଲଳିତା ମୁଖରୁ କଥା ବାହାରିଲା ନାହିଁ । କିନ୍ତୁ ଆଜି ତାହାର ଜୀବନର ଚରମ ସଫଳତା । ତାହାର ଶରୀରର ପ୍ରତ୍ୟେକ ଅଣୁ ପରମାଣୁର ପରମ କୃତାର୍ଥତା । ତାହାର ପ୍ରତ୍ୟେକ ଶୋଣିତ ବିନ୍ଦୁରେ ପରମାନନ୍ଦର ଲହରୀ, ଆଜି ଲଳିତାର ଜୀବନ ପୂର୍ଣ୍ଣ । ପରମ ପରିତୃପ୍ତ । ତାହାର ଜୀବନ ସଙ୍ଗୀତ ନବୀନ ବୀଣାତାରରେ ନୂତନ ଛନ୍ଦରେ ଝଙ୍କୃତ । ତାହାର ପ୍ରାଣର ପିୟୂଷଧାରା ତିର ମଙ୍ଗଳ ସିନ୍ଧୁରେ ସମ୍ମିଳିତ । ଲଳିତା ଆଜି ଧନ୍ୟା ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ-ପୃ-୧୩୦)

ଲଳିତା ଭାଗ୍ୟରେ ସେ ସୁଖ ବେଶିଦିନ ଜୁଟି ନାହିଁ । କିଛିଦିନ ପରେ ବେଶ୍ୟାସକ୍ତ ସ୍ୱାମୀଙ୍କର ପ୍ରକୃତ ଅବସ୍ଥା ସେ ବୁଝିପାରିଛି । ନିଜ ଦେହରୁ ଅଳଙ୍କାର କାଢ଼ି ସେ କାବୁଲି ମହାଜନର ଋଣଶୋଧ ଟଙ୍କା ସୁଝି ସ୍ୱାମୀଙ୍କୁ ଋଣମୁକ୍ତ କରିଛି । ହାତର ଚୂଡ଼ିବିକି ସ୍ୱାମୀଙ୍କୁ ଔଷଧ ଦେଇ ରୋଗମୁକ୍ତ କରିଛି । କିଛିଦିନ ପାଇଁ ବଂଶୀଧର ସୁପଥରେ ପରିଚାଳିତ ହୋଇଛନ୍ତି । ଲଳିତା ମା' ହୋଇଛି । ପ୍ରେମର ସଂସାର ତା'ର ହସି ଉଠିଛି,

ମାଡ ଦିନ ପରେ ଦିନ ବସ୍ତାଧରରେ ସୁପ୍ତ ପ୍ରକୃତି ପୁଣି ଜାଗ୍ରତ ହୋଇଉଠିଛି । କୁ ସଙ୍ଗରେ ପଡ଼ି ସେ ଅବାଟରେ ପାଦ ଦେଇଛି । ଚରମ ପରିଣତି ହୋଇଛି ତାର ମୃତ୍ୟୁ ।

ସ୍ୱାମୀଙ୍କ ମୃତ୍ୟୁରେ ଲଳିତା ଭାଙ୍ଗି ପଡ଼ିଛି । ସଂସାରର ଅଳୀକତାକୁ ସେ ବେଶ୍ ହୃଦୟଙ୍ଗମ କରିପାରିଛି । ସୁତରାଂ ସଂସାର ତ୍ୟାଗ ବାସନା ତା ମନରେ ଜାଗିଛି । ସନ୍ନ୍ୟାସିନୀ ହୋଇ ହରିନାମ କୀର୍ତ୍ତନରେ ସେ ବାକି କାଳ କଟାଇଛି ।

ଔପନ୍ୟାସିକା କୁନ୍ତଳାକୁମାରୀ ବଧୂ ଲଳିତାକୁ ଦୁଃଖ ଯନ୍ତ୍ରଣାର କଷଟି ପଥରରେ ପରୀକ୍ଷା କରି 'ପରଶମଣି'ର ଆଖ୍ୟା ଦେଇଛନ୍ତି । ତତ୍କାଳୀନ ସମାଜରେ ବଧୂର ପ୍ରମାଦପୂର୍ଣ୍ଣ, ବିପର୍ଯ୍ୟୟଗ୍ରସ୍ତ ଜୀବନକୁ କଳାକୁଶଳତାର ସହ ସେ ଚିତ୍ରଣ କରିଛନ୍ତି । ଦୟା, କ୍ଷମା, ଓ ସହନଶୀଳତାରେ ବଧୂର ମହତ୍ତ୍ୱ କେଉଁଠି ଫୁଟିଉଠେ, ତାହା ସେ ଲଳିତା ଚରିତ୍ର ଜରିଆରେ ଦେଖିବାକୁ ଭୁଲିନାହାନ୍ତି । ଲଳିତା ନିମ୍ନବିତ୍ତଆ ସମାଜର ଏକ ବାସ୍ତବ ଚରିତ୍ର ।

ସୀତା—ଔପନ୍ୟାସିକା କୁନ୍ତଳାକୁମାରୀଙ୍କ ରଚିତ ବୃହତ୍ତକାୟ ଉପନ୍ୟାସ 'ରଘୁ ଅରକ୍ଷିତ'ର ନାୟିକା ସୀତା । ପିଲାଟି ଦିନରୁ ସେ ଭଲ ପାଇଛି ବାପ ମା' ଛେଉଣ୍ଡ ଘରଦ୍ୱାରଶୂନ୍ୟ ରଘୁନାଥକୁ । ପ୍ରଥମ ସାକ୍ଷାତରୁ ସୀତା ରଘୁନାଥକୁ ଦରଫିଟା ପାନଖିଲଟିଏ ଦେଇ କହିଛି—"ତୁ କଟେଁ କାଲି ଆସିବୁ, ଆମର ଖେଳିଘରେଇକା ଖେଳିବା, ନଇଲେ ଆମେ ତୋ ଘରକୁ ଯିବା ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା—୨ୟ ଖଣ୍ଡ—ପୃ-୧୫୮) ରଘୁ ଆସିଛି ସୀତା ଘରକୁ । ସୀତା ଯାଇଛି ରଘୁ ରହୁଥିବା କକେଇ ଘରକୁ । ରଘୁ ହାତ ଗନ୍ଧରେ ସୀତା ଡାଅଣ ସଜାଡ଼ି ଦେଇଛି । ଦୁହେଁ ମିଶି ପାନ ଭୁଜା, ଉଖୁଡ଼ା ଭାଗକରି ଖାଇଛନ୍ତି । ଧନୀ ସନ୍ତାନ ସୀତା ଓ ନିର୍ଦ୍ଧନ ରଘୁନାଥ ମଧ୍ୟରେ ଧନ ସକାଶେ କିଛି ବାଧାବିଘ୍ନ ରହିନାହିଁ । ଭଲ ପାଇବା ନିକଟରେ ଧନ ତୁଚ୍ଛ ହୋଇଯିବ । "ତାହାର ରଘୁପ୍ରତି ବଡ଼ ଶ୍ରଦ୍ଧା-ବସିଲେ, ଉଠିଲେ, ଖେଳିଲେ, ବୁଲିଲେ, ଶୋଇ-ଥିଲେ, ଖାଉଥିଲେ ରଘୁ ମନେ ପଡ଼େ । ରାତିରେ ସ୍ୱପ୍ନରେ ସୁଦ୍ଧା ଦେଖେ

ରଘୁ ତାଙ୍କ ସଙ୍ଗେ ଖେଳୁଛି । (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ—୧୭୦)

ସମୟ ଗଡ଼ିଚାଲିଛି । ଦୁହେଁ ବଡ଼ ହୋଇଛନ୍ତି । ପିଲାଦିନର ସେହି ଭଲପାଇବା କ୍ରମେ ପ୍ରେମରେ ପରିଣତ ହୋଇଛି । ସେଥିରେ ଟିକିଏ ହେଲେ ଆବିଳତା ନଥିଲା । ସେହି ପ୍ରେମ ଥିଲା ଆତ୍ମଜ । "ସୀତା ମନ ମଧ୍ୟରେ ଜାଣେ ରଘୁନାଥ ତାହାର ଏକାନ୍ତ ପ୍ରିୟ—ବାବୁ ଓ ରଘୁ ମଧ୍ୟରେ ପାର୍ଥକ୍ୟ ସେ ଦେଖିପାରିଲା ନାହିଁ । ସେ ଦୁହିଁଙ୍କ ଆଦରର ସୀତା—ଦୁଇଜଣଯାକ ତାକୁ ବିଶେଷ ସ୍ନେହ କରନ୍ତି; ତଥାପି ସେ ଜାଣେ ସେ ବାବୁ ଅପେକ୍ଷା ରଘୁର ପକ୍ଷପାତି । ପ୍ରତ୍ୟେକ ଦିନ ରଘୁ ତାଙ୍କ ଘରକୁ ଆସେ । ବଡ଼ ଉତ୍ସୁକ ନେତ୍ରରେ ସୀତା ରଘୁର ବାଟ ଚାହିଁଥାଏ—କେତେବେଳେ ସ୍କୁଲ ଛୁଟିହେବ, କେତେବେଳେ ରଘୁ ଆସିବ । ତା'ର ନୟନ ଦ୍ୱୟରେ ସୀତା ଯେ ଅପୂର୍ବ ମାଧୁରୀ ଦେଖିଛି, ସେ ମାଧୁରୀ ପୃଥିବୀର ଅନ୍ୟ କେଉଁଠାରେ ସେ ଦେଖିନାହିଁ । ତା'ର କପାଳ ଉପରେ ତରଙ୍ଗାୟିତ କେଶଗୁଚ୍ଛ । ସର୍ବାଙ୍ଗର ସୁବର୍ଣ୍ଣତୁଲ୍ୟ କାନ୍ତିର ମଧୁର ସୌନ୍ଦର୍ଯ୍ୟ ସୀତା ନେତ୍ର ସାର୍ଥକ କରି ନିରୀକ୍ଷଣ କରିଛି । ରଘୁନାଥ ବଡ଼ ସୁନ୍ଦର । ବାଳିକା ରଘୁନାଥକୁ କେବଳ ସୁନ୍ଦର ଦେଖିଛି ତାହା ନୁହେଁ--ତାହା ଦୃଷ୍ଟିରେ ରଘୁ ବଡ଼ ମହତ୍ । ସୀତା ଜାଣେ ରଘୁ ଦରିଦ୍ର, କିନ୍ତୁ ସେହି ପରାନ୍ନପାଳିତ ରଘୁ ଭିତରେ ସେ ଏପରି କିଛି ଦେଖିଛି, ଯହିଁରେ ସେ ମୁଗ୍ଧା । ରଘୁର ଗୁଣ, ରଘୁର ବିଦ୍ୟାଳୟରେ ସୁନାମ, ସରଳତା, ବିନୟ, ମଧୁର ସ୍ୱଭାବ, ସର୍ବସହିଷ୍ଣୁ ଭାବ ସୀତା ଦୃଷ୍ଟିରେ ବଡ଼ ସୁନ୍ଦର ।" (କୁନ୍ତଳା-କୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୭୬/୧୭୭) ।

ରଘୁର ସାମୟିକ ବିଚ୍ଛେଦ ସୀତା ପ୍ରାଣରେ ବଡ଼ ଆଘାତ ଦେଇଛି । ଅଶ୍ରୁପୂର୍ଣ୍ଣ ନୟନରେ ସେ ରଘୁର ପଥକୁ ଚାହିଁ ରହିଛି । "ଛାତ ଉପରୁ ସୀତା ଚାହିଁ ଦେଖିଲା, ଗେରୁ ରଙ୍ଗର ସଡ଼କ ଉପର ଦେଇ ହୃଷୀ ଆଉ ରଘୁନାଥ ଗ୍ରାମକୁ ଯାତ୍ରାକଲେ । ଦୂରରେ ଗାମୁଛାରେ ବନ୍ଧା ପୁଟୁଳିମାନ ଓ ସେମାନେ ଦୃଷ୍ଟି ବହିର୍ଭୂତ ନ ହେବାଯାଏ ସୀତା ଅନାଇ ଥାଏ । କ୍ରମେ ସେମାନେ ଅଦୃଶ୍ୟ ହେଲେ । ବଡ଼ ବଡ଼ ଲୁହ ଦ'ଟୋପା ତା'ର କଳା ଆଖି କୋଣରେ ଟଳମଳ ହୋଇ ଉଠିଲା । ସୀତା ତଳକୁ ଓହ୍ଲାଇଗଲା ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୭୮) ।

ସୀତା ଓ ରଘୁନାଥ ମଧ୍ୟରେ ପ୍ରେମର ବନ୍ଧନ ଦୃଢ଼ୀଭୂତ ହେଲା ବେଳକୁ ସୀତାର ପିତା ଲୋଭୀ ଅର୍ଥଗୃଧ୍ନୁ ଚନ୍ଦ୍ରଶେଖର ମିଶ୍ର ଟ୩୫୦ଙ୍କା କନ୍ୟାପଣ ନେଇ ବୃଦ୍ଧ ଜମିଦାର ବୃନ୍ଦାବନ ସମ୍ବନ୍ଧ ନିର୍ବନ୍ଧ କରିଦେଇଛନ୍ତି । ସୀତା ଜୀବନର ସମସ୍ତ ଦୁଃଖ ଅଶ୍ରୁରେ ପରିଣତ ହୋଇ ଝରିପଡ଼ୁଛି । "ସେ ଆଜି ଅନ୍ୟମନସ୍କା । ଚାହିଁ ଚାହିଁ ତା' ଜୀବନର ପ୍ରାୟ ଦଶବର୍ଷ କଟିଯାଇଛି । ଆସନ୍ତା ମଙ୍ଗଳବାର ତା'ର ବାହାଘର । କିନ୍ତୁ ବିବାହ କ'ଣ ସେ ତାହା ବୁଝିନାହିଁ । ଏତିକି ମାତ୍ର ବୁଝିଛି ସେ ଶାଶୁଘରକୁ ଯିବ । ଗୋଟିଏ ଦରବୁଢ଼ା ଲୋକ ତାହାର ବର ହେବ । ସେ ଲୋକର ତିନି ପୁଅ, ଦୁଇ ଝିଅ । ସେ ଘରେ ତା'ର ସାଙ୍ଗକୁ ବୋହୂ ଆସିବ, ସୀତା ତାହାର ଶାଶୁ ହେବ । ଏସବୁ ଭାବି ଭାବି ସୀତାର ଲଜ୍ଜାବୋଧ ହେଲା । କିନ୍ତୁ ସେଥିରେ ତା'ର କ୍ଷତି ବା ଲାଭ କ'ଣ ସେ ବୁଝିପାରିଲା ନାହିଁ । ସେ କେବଳ ଭାବିଲା—ଏଡ଼େ ବୁଢ଼ାବରକୁ ବାହା ହେବ ? ଲୋକେ ଥଟ୍ଟା କରିବେ । ପରକ୍ଷଣରେ ତାହାର ସେ ଚିନ୍ତା ଦୂରୀଭୂତ ହେଲା । ଗୋଟିଏ ସୁନ୍ଦର ସୁଖ ଚିନ୍ତାର ସ୍ଥାନ ଅଧିକାର କଲା ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୮୫) ।

ବାହାଘର ସମୟ ପାଖେଇ ଆସିଛି । ସୀତାର ଦୁଃଖ ବଢ଼ି ବଢ଼ି ଚାଲିଛି । ସୀତାର ଭାବୀ ସ୍ୱାମୀ ବାତ ରୋଗରେ ପୀଡ଼ିତ ହୋଇ ଇହଲୀଳା ସମ୍ବରଣ କରିଛନ୍ତି । ସୀତାର ଦୁଃଖ ଦ୍ୱିଗୁଣିତ ହୋଇ ଯାଇଛି । ପିତାଠାରୁ ଆରମ୍ଭ କରି ସ୍ତ୍ରୀଲୋକମାନେ କଥାଘା'ରେ ଲୁଚ୍ଛିଟା ଦେଇ ଟାହିଟାପରା କରିଛନ୍ତି । "ବେଦୀରେ ନ ବସୁଣୁ ବରକୁ ଖାଇଲା । ମା'ଲୋ, କି ଅଲକ୍ଷଣୀ । ରୂପ ସୁନ୍ଦର ହେଲେ କି ହେବ—ବିଧବା ଲକ୍ଷଣ ଦେହଯାକ ଭରି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୮୭) ଅନେକ 'କୁ' ବିଶେଷଣରେ ବିଶେଷିତା ସୀତା ନୀରବରେ ଆଖିରୁ ଲୋତକ ବୁହାଇ ପିତୃଗୃହରେ କାଳ କାଟିବାକୁ ଲାଗିଲା ।

କିଛିଦିନ ଯାଇଛି । ସୀତାର ପରିବାରରେ ରଘୁନାଥ ଓ ସୀତାର ବିବାହ ପ୍ରସଙ୍ଗ ଉଠିଛି । ସୀତା ମନେ ମନେ ଖୁସି ହୋଇଛି । "ଦୁଇଦିନ ଗଲା । ପୁଣି ରଘୁନାଥ ଆସିଲା । ସୀତା କଥା କହିପାରିଲା ନାହିଁ । ରଘୁନାଥ ମଧ୍ୟ କଥାକହି ପାରିଲା ନାହିଁ । ପ୍ରଚ୍ଛନ୍ନ ଲଜ୍ଜା ଭାବ ଉଭୟଙ୍କୁ

ଆକ୍ରମଣ କରି ପୃଥକ୍ ରଖିଲା । କିନ୍ତୁ ଏତେ ପାର୍ଥକ୍ୟ ମଧ୍ୟରେ ସୁଦ୍ଧା ଉଭୟଙ୍କ ହୃଦୟ ଯେ ଏକ, ଏହା ସେମାନେ ବୁଝିଥିଲେ । ଉଭୟ ପରସ୍ପର ଅପାର ସ୍ନେହରେ ବନ୍ଧା । ପରସ୍ପରର ଦର୍ଶନରେ ପୁଲକିତ, ସ୍ୱରଶ୍ରବଣରେ ଆନନ୍ଦିତ । ପରସ୍ପରକୁ ସନ୍ତୁଷ୍ଟ କରିବା ପାଇଁ ସଦା ପ୍ରୟାସୀ ।” (କୁନ୍ତଳା-କୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୯୬) ରଘୁନାଥ ଅଳଙ୍କାରକୁ ଘୃଣା କରେ । ସେଥିପାଇଁ ସୀତା ଅଳଙ୍କାର ଲଗାଏ ନାହିଁ । କେତେକଥା ତା’ ମନରେ ଉଙ୍କି ମାରେ । ରଘୁନାଥର ପାନବଟାରେ ପାନଭିଡ଼ି ସଜାଡ଼ି ଦେବାକୁ, ବିଛା ଢୁଆଇବାକୁ, ଜହ୍ନ ଆଲୁଅରେ ବସି ଗୋଡ଼ ଘଷିଦେବାକୁ ତା’ ମନ ଡାକେ । ମାତ୍ର ମନକଥା ମନରେ ରହେ । ରଘୁ ପଠାଇଥିବା ଉପହାରଗୁଡ଼ିକୁ ସୀତା ସଜାଡ଼ି ରଖେ । ଗଭୀର ପ୍ରେମରେ ଦୀର୍ଘଶ୍ୱାସ ମାରେ ।

ସୀତାର ସମସ୍ତ ସୁଖ ସ୍ୱପ୍ନକୁ ଭାଙ୍ଗିଚୁରି ତା’ର ପିତା ଦୁଇହଜାର ଟଙ୍କା କନ୍ୟାପଣ ନେଇ ଚରିତ୍ରହୀନ ନିଶାଖୋର ଜମିଦାର ଦିବାକର ମିଶ୍ର ସହିତ ତା’ର ବନ୍ଧନ କରିଦେଇଛନ୍ତି । ସୀତାର ମୁଣ୍ଡରେ ବଜ୍ର ପଡ଼ିଛି । ସେ କିଂ କର୍ତ୍ତବ୍ୟବିମୂଢ଼ା ହୋଇ ପଡ଼ିଛି । ପିତାର ସିଦ୍ଧାନ୍ତକୁ ମୁଣ୍ଡପାତି ସହିଯିବା ପାଇଁ ତା’ର ବିବେକ ବାଧା ଦେଉଛି । ମାତ୍ର ଯେଉଁ ସମାଜରେ ନାରୀ ଅସହାୟା, ପାଟି ଫିଟାଇ କଥାକହିବା ଯାହାପାଇଁ ପାପ ସେ ସମାଜରେ ସୀତା ପିତାଙ୍କ ସମ୍ମୁଖରେ ଛିଡ଼ା ହୋଇ ନିଜର ଇଚ୍ଛାକୁ ଉପସ୍ଥାପିତ କରିବା ଯେ କିପରି ସମ୍ଭବ ତାହା ସହଜରେ ଅନୁମେୟ । ସୁତରାଂ ଆତ୍ମହତ୍ୟା ତା ପାଇଁ ଏକମାତ୍ର ପନ୍ଥାବୋଲି ସେ ଧରିନେଇଛି ।

କିନ୍ତୁ ପିତେଇନାମାର ଦୃଷ୍ଟି ଭିତରେ ସେ ମରିପାରି ନାହିଁ । ନିସ୍ତବ୍ଧ ରଜନୀରେ ରଘୁନାଥ ସହିତ ମିଳିତ ହୋଇ ମନର ସବୁ ଅଭିମାନ ଚକ୍ଷୁଜଳରେ ତା’ର ପାଦ ତଳେ ଅଜାଡ଼ି ଦେଇଛି । ନିଜ ବେକରୁ ସୁନାସୂତା କେରିକ କାଢ଼ି ରଘୁନାଥର ବେକରେ ଲମ୍ବାଇ ଦେଇଛି । “ଆଜ ଜୀବନର ପ୍ରଥମ ପୂର୍ଣ୍ଣମିଳନ । ପୂର୍ଣ୍ଣମିଳନରେ ଦାରୁଣ ବିଚ୍ଛେଦ ଘଡ଼ିକ ସକାଶେ ନୁହେଁ,-- ଚିରଦିନ ସକାଶେ ବିଚ୍ଛେଦ । ଏ ବିଚ୍ଛେଦର ଜ୍ୱାଳା କି ଆଉ ଲିଭିବାର । X X X ଆଖିପୋଛି ସୀତା ରଘୁନାଥକୁ ଅନାଇଲା, ରଘୁନାଥ ମଧ୍ୟ ତାକୁ ଅନାଇଲା । ରଘୁନାଥ

ବାରଣ କରିବା ପୂର୍ବରୁ ତାହା ତା ବେକରେ ଗଳାଇ ଦେଲା । ରଘୁନାଥ ପସ୍ତିର ପାରିଲା ନାହିଁ—କାହିଁକି ? ମାରବରେ ରଘୁନାଥ ଉଠି ଠିଆ ହେଲା । ବଡାପୁର ସମସ୍ତଙ୍କ କେହି କାହାକୁ ଦେଖିଲେ ନାହିଁ । ପରସ୍ପର ଆପଣା ବାଟରେ ଗଲେ; କିନ୍ତୁ ଆତ୍ମା ଭିତରେ ରହିଲା ବନ୍ଧନ—ସେହି ସୂତା କେବଳ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା ପୃ-୧୯୦)

ଜାକଜମକରେ ସୀତାର ଦିବାକର ମିଶ୍ର ସାଙ୍ଗରେ ବାହାଘର ହୋଇଯାଇଛି । ଏ ବାହାଘରରେ ଆତ୍ମା ସହିତ ଆତ୍ମାର ମିଳନ ହୋଇନି । ପୁରୋହିତ ମନ୍ତ୍ର ଉଚ୍ଚାରଣ କରି ହସ୍ତ ସହିତ ହସ୍ତର ମିଳନ କରାଇ ଦେଇଛି । ଯଥା ସମୟରେ ମନ୍ତ୍ର ପାଠ, କୁଶ ବନ୍ଧନ, ସିନ୍ଦୂର ଗ୍ରହଣ ପରେ ମଧ୍ୟ ସୀତା ଶବବତ୍ ରହିଲା । ସେ ଧନ ସେ ପଥର । ତା'ର ଆତ୍ମା ତା ଭିତରେ ଥିଲା କି ନାହିଁ ସନ୍ଦେହ । କେବଳ ଜଣକର ନିର୍ଦ୍ଦେଶରେ ଓ ଇଙ୍ଗିତରେ ସେ ନିଜକୁ ଯନ୍ତ୍ରରେ ବଳି ଦେଉଥିଲା । ଯେତେବେଳେ ତାର ପ୍ରାଣଶୂନ୍ୟ ହାତ ଉପରେ ଦିବାକରର ବାସନାମୟ ଉଷ୍ମ ହସ୍ତ ରଖି ପୁରୋହିତ କୁଶ ଗ୍ରନ୍ଥି ଦେଲେ, ସେତେବେଳେ ତା ଦେହର ହାଡଟା ଖସିଗଲା ପରି ମନେ ହେଲା । ଯନ୍ତ୍ରଚାଳିତବତ୍ ସୀତା ସବୁ କରିଗଲା, ସବୁ ଅନୁଷ୍ଠାନରେ ମିଶିଲା । ହାଣ-କଣ୍ଟାରି କଣ୍ଠରେ ଦଉଡ଼ି ବନ୍ଧା ଛେଳି ଛୁଆର ଗୁମ୍ଫ କ'ଣ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ-୨୬୦)

ଶାଶୁଘରେ ସୀତା ସୁଖୀ ହୋଇ ପାରିନି । ଶୟନେ ସ୍ୱପନେ ଜାଗରଣେ ସେ ସର୍ବଦା ରଘୁନାଥ କଥା ଚିନ୍ତା କରିଛି । ଦିବାକର ମିଶ୍ର ସୀତାକୁ ଆପଣାର କରିପାରି ନାହାନ୍ତି । ରାଗ ଓ ଅଭିମାନରେ ସୀତାକୁ ବାପଘରକୁ ପଠାଇ ଦେଇଛନ୍ତି । କଷ୍ଟଦିନ କଟିଯାଇଛି । ଦିବାକର ବେଶ୍ୟା ଅଙ୍ଗୁରବାଳା ସହିତ କୁକର୍ମରେ ଲିପ୍ତ ଥିବା କଥା ସୀତାର କାନରେ ବାଜିଛି । "ସୀତା ଏକଥା କାନରେ ଶୁଣିଲା ନାହିଁ, କିନ୍ତୁ କେଜାଣି କାହିଁକି ଅନପେକ୍ଷିତ ଈର୍ଷାରେ ତା ଛାତି ଗୁରୁଗୁରୁ ହେଲା । ମନର ଅକାରଣ ଭ୍ରାନ୍ତ ଭାବ ସେ ନିଜକୁ ବୋଧ ଦେବାକୁ ଲାଗିଲା ।" (କୁନ୍ତଳା କୁମାରୀ ଗ୍ରନ୍ଥମାଳା, ୨ୟଖଣ୍ଡ, ପୃ-୨୫୬) କିନ୍ତୁ ପରକ୍ଷଣରେ ନିଜ ହୃଦୟର କଥାକୁ ସେ ଶୁଣିପାରିଲା । ନିଜକୁ ସେ ଦୋଷୀ ମଣିଲା । "ତା ମନରେ ହେଲା, ତା'ରି ଦୋଷଯୋଗୁଁ ବର୍ତ୍ତମାନ ଦିବାକରର ଏ ଦୁର୍ଗତି । ସ୍ୱାମୀକୁ

ଆପଣାର କରିଥିଲେ ସେ କ'ଣ ବାଟକୁ ଆସି ନ ଥାନ୍ତେ । × ×
ସେ କ'ଣ ଦିବାକରର ମନ ଭୁଲାଇ ତାକୁ ହାତମୁଠାରେ ରଖିପାରି ନ ଥାନ୍ତା । ହାଏ' ସେ କିଛି କଲା ନାହିଁ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ-ପୃ· ୨୭୮)

ବାପଘରେ ବାପର ତାଡ଼ନା ସୀତାକୁ ବେଶ୍ ବାଧୁଛି । ସେ ପୁଣି ଶାଶୁଘରକୁ ଯିବାକୁ ବସିଛି । ଶାଶୁ ଘରେ ତା'ର ସ୍ୱାମୀ ପ୍ରେମ ଉଚ୍ଛୁଳି ପଡ଼ୁଛି । ଧୀରେ ଧୀରେ ଅଜ୍ଞାତ ଭାବରେ ତା ହୃଦୟରେ ଦିବାକର ଆସନ ଲାଭ କରୁଛି । ସୀତାର ଭଲ ପାଇବାରେ ଦିବାକର ବଶୀଭୂତ ହୋଇ-ଯାଉଛି । ସୀତା ମହାନନ୍ଦ ଲାଭ କରୁଛି । ଯଥା ସମୟରେ ସୀତା ମାତୃତ୍ୱ ଲାଭ କରୁଛି । ତା'ର ଆନନ୍ଦର ସୀମା ନାହିଁ । କିନ୍ତୁ ରଘୁନାଥକୁ ସେ ସମ୍ପୂର୍ଣ୍ଣରୂପେ ଭୁଲିପାରିନାହିଁ । ଇତ୍ୟବସରରେ ଦିବାକର ଇହଧାମ ତ୍ୟାଗ କରିଛନ୍ତି । ସୀତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦିଶିଛି । ତା'ର ବିଧବା ଜୀବନ ତାକୁ ବୋଝ ହୋଇଛି । ସୁତରାଂ ସେ ମରିବାକୁ ବସିଛି । "ଆଜି ସେ ମରିବାକୁ ବସିଛି—ଦିବାକର ତାକୁ ପୃଥିବୀ ଏ ପାରିରେ ଏକାକିନୀ ବସାଇ ଚାଲିଗଲେ ବୋଲି । ସେ କ'ଣ କେବେ ଭାବିଥିଲା ଏ୍ୟା ହେବ ? ତାହାର କ୍ଷୁଦ୍ର ଜୀବନ-ନାଟକ ଏତିକିଠାରେ ଶେଷ ହେଲା ପରା ? ତେବେ କିମ୍ପା ଆଉ ସେ ବଞ୍ଚିବ ? ବିଧବାର ଜୀବନ ଭାର ବହନ କରି କାହିଁକି ଆଉ ସେ ବଞ୍ଚିବ ? ବରଂ ସ୍ୱାମୀ ଯେଉଁ ଲୋକକୁ ଯାଇଛନ୍ତି, ସେ ସେହି ଲୋକକୁ ଚାଲିଯିବ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟଖଣ୍ଡ, ପୃ-୩୨୯)

କିନ୍ତୁ ରଘୁନାଥର ବାରଣରେ ସୀତା ଏଭଳି ଚିନ୍ତାରୁ ନିବୃତ୍ତ ହୋଇଛି । ପରିଶେଷରେ ବିପତ୍ନୀକ ରଘୁନାଥ ସୀତାକୁ ବିବାହ କରିବାକୁ ଚାହୁଁଛି । ମାତ୍ର ସୀତା ରଘୁନାଥର କଥାରେ ଏକମତ ହୋଇ ପାରିନାହିଁ । "ସୀତା କୁପିତାଫଣିନୀ ପରି ଉଠି ଠିଆ ହେଲା । ଶ୍ଳେଷପୂର୍ଣ୍ଣ ଗମ୍ଭୀର ସ୍ୱରରେ କହିଲା—"ଆଉ ମୋ ମୁହଁ ଦେଖିବାକୁ ଆସନାହିଁ । ମୁଁ ସେ ସୀତା ନୁହେଁ, ସେ ସୀତା ତ ଅନେକ ଦିନରୁ ମଲାଣି । ମିଶ୍ର ବଂଶର ବୋହୂ ମୁଁ ଅମୂଲ୍ୟ ମୋହନର ମା—ଆଜି ଏ ମୁହୂର୍ତ୍ତରେ ମୋ ସ୍ୱାମୀର ପବିତ୍ର ମୂର୍ତ୍ତି ମୋ ଆଖି ଆଗରେ—ପାପିଷ୍ଠ, ଦୂର ହୁଅ । ଦୂର ହୁଅ ମୋ ଆଖି ଆଗରୁ । ଆଉ କାହାକୁ ବଶ ହୁଅ—ସୀତାକୁ ନୁହେଁ । ସେ ଫେରି ଚାଲିଯାଉଥିଲା ।

ପସ୍ୱଜଡ ରଘୁନାଥ ତା'ର ଅସମ୍ଭବ ତେଜପୂର୍ଣ୍ଣ କଥାଶୁଣି ଏକାବେଳକେ ହତବୁଦ୍ଧି ହୋଇଗଲ । ତଥାପି ସାହସକରି ଡାକଲ 'ସୀତା ରହ' ତୁମ ମନରେ କଷ୍ଟ ଦେଲି, କ୍ଷମାକର ।' ସୀତା କୁଳପଢ଼ ଟିଆହେଲ । ରଘୁନାଥ କହିଲ "ମୁଁ ତୁମକୁ ସୁଖୀ କରିବାକୁ ଚାହିଁଥିଲ ।"

'ମତେ ସୁଖୀ କରିବାକୁ ଚାହଁ, ତେବେ କଲ୍ୟାଣକର, ସୀତା ଶୀଘ୍ର ମରୁ । ଆଉ ତାର ସ୍ୱାମୀ, ଯାହାର ଘର ସେ ପନ୍ଦର ବର୍ଷ କରିଛି, ଯାହାର ପୁଅକୁ ସେ ଗର୍ଭରେ ଧରିଥିଲ, ସେହି ସ୍ୱାମୀ, ସେହି ପୁଅକୁ ଜନ୍ମେ ଜନ୍ମେ ଆପଣାର କରିପାଉ । ମହାପ୍ରଭୁ ମତେ ସେହି ସ୍ୱାମୀ, ସେହି ପୁଅ ଦିଅନ୍ତୁ ।' (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୩୫୨) ରଘୁନାଥ ନୀରବ ଚିତ୍ତରେ ଫେରିଯାଇଛି ।

ସୀତା ସମ୍ବନ୍ଧରେ ନିଜେ କୁନ୍ତଳାକୁମାରୀ କହିଛନ୍ତି—ସୀତାର ଭଲପାଇବାଟା ରଘୁନାଥକୁ କେନ୍ଦ୍ରକରି ବିବାହିତଠାରେ ପ୍ରତିଷ୍ଠିତ ହେଲା । ରାମାୟଣର ସୀତା ନୁହେଁ—ରଘୁଅରକ୍ଷିତର ସୀତା । ରାମାୟଣର ସୀତା ନାରୀ ହିସାବରେ ବ୍ୟକ୍ତି ନୁହେଁ—ସୀତା ହିସାବରେ ବ୍ୟକ୍ତି । ସୀତା ନାରୀ ହିସାବରେ ବ୍ୟକ୍ତି । ପିତେଇବୁଢ଼ୀ ଆଗରେ ମାନ ଦେବାଦ୍ୱାରା ସୀତାର ରଘୁନାଥର ବିବାହ ହିନ୍ଦୁଧର୍ମମତେ ହୋଇଗଲ । × × ସୀତା କୁମାରୀ ହିସାବରେ ବିବାହିତକୁ ବରିହେଲ । ତୁମେ କହିବ ଏହା କ'ଣ ହିନ୍ଦୁଧର୍ମର ଆଦର୍ଶ ? ମୁଁ କହୁଛି ଏହାହିଁ ଘଟିଛି । ଏହାହିଁ ବାସ୍ତବିକ ସତ୍ୟ ବିବାହିତା ସୀତାଗତପ୍ରାଣ ରଘୁନାଥ । ସେ ପ୍ରେମ କଲା—କିନ୍ତୁ ମାୟା ବିବାହିତରୂପୀ ଆଚ୍ଛାଦନ ଅପସରି ଗଲା । ପରେ ମୃତ୍ୟୁ ଶଯ୍ୟାରେ ସୀତା ଚିହ୍ନିଲ—ଦେହ ମିଥ୍ୟା, ଆତ୍ମା ସତ୍ୟ, ଅନନ୍ତ ଶାଶ୍ୱତ ପ୍ରେମ ରଘୁନାଥ ଓ ସୀତାର ସିଂଟଣା-ଚକ୍ର ତାକୁ ନାଶ କରିପାରି ନାହିଁ । ଏଇଟା ହିଁ Romance × × ମାନବ ହୃଦୟ ପଦାର୍ଥ—ସେ ବସ୍ତୁକୁ ଭଲପାଏ—ଅଥଚ 'ଏକମେବା ଦ୍ୱିତୀୟଂ'ର ଆରାଧନା କରେ ।" (କୁନ୍ତଳାକୁମାରୀ ଜୀବନଚରିତ—ଚକ୍ରଧର ମହାପାତ୍ର)

କୁନ୍ତଳାକୁମାରୀଙ୍କ ଲକ୍ଷ୍ମୀ, ଲଳିତା ଓ ସୀତା ଏମାନେ ସମସ୍ତେ ସମାଜ ଦ୍ୱାରା ନିଷ୍ପେଷିତ । ସମାଜ ସେମାନଙ୍କୁ ତାଙ୍କର ନ୍ୟାଯ୍ୟଦାବୀ

ଦେଇନାହାଁନ୍ତି । ସେମାନଙ୍କ ଆଖିର ଧାରାଶ୍ରାବଣରେ ସମାଜର ବକ୍ଷଭେଦ-ପାରିନାହିଁ । ସେମାନଙ୍କ ବୁକୁଫଟା ଚିତ୍କାରରେ ସମାଜ ଥରି ଉଠିନାହିଁ । ସେ ପଙ୍ଗୁ, ସେ ଅଥର୍ବ ।

## ଦୁଷ୍ଟ ସ୍ୱାର୍ଥପର ଓ ଇତର ନାରୀ ସମାଜ :

'ନଅଭଉଣୀ' ଉପନ୍ୟାସର ଗେଣ୍ଡେଇ, ଇତମା, 'ଭ୍ରାନ୍ତ' ଉପନ୍ୟାସର ମାଳତୀ, ଦୁର୍ଗାବତୀ, 'ପରଶମଣି' ଉପନ୍ୟାସର ତମାଳିନୀ, ରମାସୁନ୍ଦରୀ 'ଇଦ୍‌ଅରକ୍ଷିତ' ଉପନ୍ୟାସର ରାଧାମଣି, ଫୁଲ ମଞ୍ଜରୀ, ପୃଥିକାଆଦି ନାରୀଗଣ ଦୁଷ୍ଟ, ସ୍ୱାର୍ଥପର ଓ ଇତର ଶ୍ରେଣୀର ।

**ମାଳତୀ ଓ ଦୁର୍ଗାବତୀ**—ଔପନ୍ୟାସିକା କୁନ୍ତଳାକୁମାରୀଙ୍କ 'ଭ୍ରାନ୍ତ' ଉପନ୍ୟାସରେ ସାନନ୍ଦ ଦାସର ସ୍ତ୍ରୀ ଦୁର୍ଗାବତୀ ଓ କନ୍ୟା ମାଳତୀ ଅତ୍ୟନ୍ତ ସ୍ୱାର୍ଥପର ରମଣୀ । ମାଳତୀ ଜମିଦାର କନ୍ୟା ଶେଫାଳିର ବାଲ୍ୟ-ସଙ୍ଗିନୀ । ଶେଫାଳି ମାଳତୀକୁ ଅନ୍ତରଭରି ଭଲପାଏ । ମାତ୍ର ନିଜେ ଅନଙ୍ଗ ମୋହନକୁ ପାଇବା ନିମିତ୍ତ ସେ ଶେଫାଳି ଆଗରେ ମିଛ କହିଛି । ତାକୁ ଭୁଲାଇ ନିଜର ସ୍ୱାର୍ଥ ସାଧନ ନିମିତ୍ତ ସେ ଆଗେଇ ଯାଇଛି । ତାହାର କୁମନ୍ତ୍ରଣାରେ ଶେଫାଳି ଅନଙ୍ଗମୋହନଙ୍କୁ ତ୍ୟାଗ କରିଛି । ଫଳତଃ ଅନଙ୍ଗ-ମୋହନ ଦେଶାନ୍ତର ହୋଇଛି । ଶେଫାଳି ଅସୁସ୍ଥ ହୋଇ ମୃତ୍ୟୁ ମୁଖରେ ପଡ଼ିଛି, ମାତ୍ର ପରେ ସେ ମାଳତୀର ଚକ୍ରାନ୍ତ ବୁଝିପାରିଛି । ମାଳତୀର ଛଦ୍ମରୂପ ପ୍ରକାଶିତ ହେବାରୁ ସେ ଅପମାନିତା ହୋଇଛି ।

**ତମାଳିନୀ ଓ ରମାସୁନ୍ଦରୀ**—'ପରଶମଣି' ଉପନ୍ୟାସର ତମାଳିନୀ ଓ ରମାସୁନ୍ଦରୀ ଉଭୟେ ଅତ୍ୟନ୍ତ ଈର୍ଷାପରାୟଣା ସ୍ୱାର୍ଥପରା ନାରୀ । ତମାଳିନୀ ବିଧବା ହୋଇ ନିଜ ପିଲାମାନଙ୍କୁ ଧରି ଭାଇ ନିକଟରେ ଆଶ୍ରୟ ନେଇଛି । ମାତ୍ର ଭାଇ ଭାଉଜର ସୁଖ ସେ ଦେଖି ପାରିନି । ନିଜ ମା'କୁ ଶିଖାଇ ସବୁ ସୁଖ ସୁବିଧା ସେ ନିଜେ ହାସଲ କରିଛି । ବିନା କାରଣରେ ସର୍ବଦା ସେ ଭାଉଜ ଲଳିତା' ସାଥିରେ କଳି ତକରାଳ କରିଛି । ଠିକ୍ ସେହିପରି ରମାସୁନ୍ଦରୀ ବିଧବା ହେବାପରେ ସାନ ଜା' ଓ ଦିଅର ଉପରେ ବୋଝ ହୋଇଛି ତଥାପି ସାନ ଜା' ଲଳିତାକୁ ସେ ଦି' ଆଖିରେ ଦେଖି ପାରିନି । ଦିଅର ବିମ୍ବାଧର ଅସୁସ୍ଥ

ଥିବାବେଳେ ସେ ମନେ ମନେ ଟିକିଏ ସୁଖୀ ହେଲା, କିନ୍ତୁ ଶାଶୁଙ୍କର ଭଲ ବ୍ୟବହାରରେ ତା ମନ ଟିକେ ବଦଳିଗଲା, (କୁନ୍ତଳାକୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ ପୃ-୧୦୪) ସୁତରାଂ ତମାଳମୀ ଓ ରମାସୁନ୍ଦରୀ ଓଡ଼ିଶାର ଗାଁ ଗହଳର ବାସ୍ତବଧର୍ମୀ ଚରିତ୍ର । ନିଜର ସୁଖ ସୁବିଧା ହାସଲ କରିବା ନିମିତ୍ତ ସେମାନେ ସର୍ବଦା ତତ୍ପର ।

ରତ୍ନମନୀ :—କୁନ୍ତଳାକୁମାରୀଙ୍କ 'ନଅତ୍ରୁଣ୍ଡୀ' ଉପନ୍ୟାସର ନାୟିକା ନଅତ୍ରୁଣ୍ଡୀ ଓରଫ ରତମୀ ଏକ ଅପୂର୍ବ ସୃଷ୍ଟି । ବାସ୍ତବ ଓ ଆଦର୍ଶର ସମନ୍ୱୟରେ ଏହି ବର୍ଣ୍ଣିତ ଚରିତ୍ରଟି ଅତୀବ ଜୀବନ୍ତ ତଥା ମନୋଜ୍ଞ ହୋଇପାରିଛି ।

"କଳଅାଖୋରଣୀ ଗେରସ୍ତଘରର ଝିଅ ରତମୀ । ଦେଖିବାକୁ ବେଶ୍ ଉଜ୍ଜଳଜାଜଳ । ରଙ୍ଗ ବି ମସିଆ ନୁହେଁ, ମାତ୍ର ନାକଟି ଟିକିଏ ଚେପେଟା । ହେଲେ ଏହି କଥା ପଦକ କାହାରି ପାଟିରୁ ଫିଟେନା । ଫିଟିଲେ ଏକା ଘଡ଼ିକେ ଗାଁଟା କଳକଜିଆରେ ଉଚ୍ଛୁଳିପଡେ । ପୁରୁଷ, ସ୍ତ୍ରୀ, ପିଲା, ବୁଢ଼ା ସମସ୍ତଙ୍କର ଡର ରତମୀକୁ । "ରତମୀକୁ ଆସି ହେଲାଣି ଷୋହଳ ବର୍ଷ, କିନ୍ତୁ ବାହାସାହାର ନାଁ ନାହିଁ । ତାକୁ ବା ବାହାହେବ କିଏ ? ସେ'ତ ପକ୍କା କଳଅାଖୋରଣୀ । ରତମୀ ନାଁ କିଏ ଶୁଣିନାହିଁ ଯେ ତାକୁ ଭରସି ବୋହୂ କରିବ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ ପୃ-୩୬)

ରତମୀ ବଡ କର୍ମଶୀଳା । କୌଣସି କାମକୁ ତା'ର ଭୟ ନଥାଏ । ନିର୍ଭୟରେ ସେ ସବୁକାମ କରିଯାଏ । ଏଥିପାଇଁ ଗାଁରେ ତା'ର ଆଦର ଥାଏ । "ଦୁଃଖ ଧନ୍ଦାକର ଧାନ କୁଟି, ଧାନ ଉଁସେଇ, ଘରଘର ପାଞ୍ଚ ଟାଇଟିକର ମା'ଝିଅ ଚଳନ୍ତି । × × ଯେତେ ଭଡ଼କାମ ହେଉ, ଗେଲ୍‌ହା ରତମୀର ଡର ନାହିଁ । ପୁଅ ମଲାଦିନୁ ଗେଲ୍‌ହାର ଟିକେ ଚଳ ଭାଙ୍ଗିଗଲାଣି । କିନ୍ତୁ ରତମୀ ସବୁଥିକି ଆଗୁସାର । × × ଆଉ ପାଖ ଗାଁ ଗଣ୍ଡାରେ ମଧ୍ୟ ତା ନାଁ ପଡ଼ିଥିଲା । ପାଣିରେ ପହଁରିବାକୁ, ଧାନ ଉଁସେଇବାକୁ ରତମୀ ଯେମିତି ପାରେ ଆଉ କିଏ ସେମିତି ପାରିବ ? ପାଣି କଡ଼ାରେ ସେ ସଭିଙ୍କି ଜିତେ । ପୁଣି ଖୋରଣୀ ପଣରେ ତହିଁକି ବଳି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ-୩୭)

ରତମା ଘର ସାହସିମ। ତା'ପର ଜବରଦ୍ରୁକୁ ଝିଅ କ୍ୱଚତ୍ ଦେଖାଯାନ୍ତି । ଘରେ ପଶିଥିବା ଘ୍ରେର ଚଳରେ ସେ ଫାଁଶାଧର ଗୋଡ଼ାଏ । ଜମିଦାର ମୁହଁରେ ମଧ୍ୟ ଜବାବ ଦେଇପାରେ । ତାହାର ସେହି ସାହସପଣ ଯୋଗୁ ସେ ଗାନ୍ଧୀବାଘ ଜମିଦାର କୃଷ୍ଣଚନ୍ଦ୍ର ବାବୁଙ୍କ ସହଧର୍ମିଣୀ ହୋଇଛି । ଗାନ୍ଧୀଙ୍କ ଆଦର୍ଶକୁ ଆଖି ଆଗରେ ରଖି ସେ ତା ସ୍ୱାମୀଙ୍କ ସହ କାର୍ଯ୍ୟ କରିଛି । ସ୍ୱାମୀଙ୍କ ଇଚ୍ଛାରେ ସେ ପାଠ ପଢ଼ିଛି । "ସାଆନ୍ତଙ୍କ ଶିକ୍ଷାରେ ନଅଭୁଣ୍ଡୀ ଘର ବଦଳିଗଲା । ଆଗ ମଣିଷ ଆଉ ସେ ନୁହେଁ । ଯେମିତି ସଭ୍ୟ ସେମିତି ଭଲ । ତା ଖୋରଣ୍ଡୀପଣ କୁଆଡ଼େ ଗଲା । ସାଆନ୍ତେ ତା ପାଇଁ ଗୋଟିଏ ମାଷ୍ଟ୍ରାଣୀ ଆଣିଲେ । ଛ ମାସରେ ସେ ସବୁ ପଢ଼ି ପକେଇଲା । ତାର ଘର ବୁଦ୍ଧି । ଯାହା ଧରୁଥାଏ ତାହା ଶିଖୁଥାଏ । ସାଆନ୍ତେ ଘରପାଖରୁ ଭଲ ସୁଆର ମଗେଇ ତାକୁ ଅନେକ ପ୍ରକାର ରନ୍ଧାବଢ଼ା, ପିଠାପଣା ଶିଖେଇଲେ । ନିଜେ ଗାଉଣା ବାଜଣା ଶିଖାଇଲେ । ଅରଟରେ ସେ ଏମିତି ସରୁ ସୂତା କାଟିଲା ଯେ ସେ ଗାଁରେ ତା ଠୁ ବଳି ଆଉ ଭଲ ସୂତା କେହି କାଟିପାରୁ ନ ଥିଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ-୭୦)

ସ୍ୱାମୀ ଓ ଶାଶୁଙ୍କର ସେବାକରି ରତମା ତାଙ୍କ ମନ କିଣି ନେଇଛି । ନିଜ ହାତରେ ନ' ତିଅଣ ଛ' ଭଜା କରି ସେମାନଙ୍କୁ ପରଶି ଦେଇଛି । ଗ୍ରୁକ୍ରଙ୍କ ଖିଆପିଆର ତତ୍ତ୍ୱ ମଧ୍ୟ ସେ ଉତ୍ତମରୂପେ ନେଇଛି । ବଡ଼ ସଉତୁଣୀକୁ ସେ ଭଉଣୀପରି ଦେଖିଛି । ସମସ୍ତଙ୍କ ସହିତ ମିଳାମିଶା କରିଛି । କାମରେ ସେ ଘର ମୂର୍ତ୍ତି । ସ୍ୱାମୀଙ୍କ କଥାକୁ ବେଦରଗାର ପରି ମଣିଛି । ସରୁ ଲୁଗା, ବାସନାତେଲ ବା ଆଯୁ ଅଳଙ୍କାରରେ ସଜେଇ ହୋଇ ସେ ନୂଆସର ରାଣୀ ସାଜିନାହିଁ ; ବରଂ ପୁରୁଷମାନଙ୍କ ସହିତ ପଦାକୁ ଗୋଡ଼କାଢ଼ି ଦୁଃଖୀ ଦରିଦ୍ରଙ୍କ ଘରକୁ ଯାଇ ପ୍ରଜାଙ୍କ ହାନିଲାଭ ବୁଝିଛି ।

ସ୍ୱାମୀଙ୍କ ଶିକ୍ଷାରେ ରତମା ପ୍ରାଣରେ ଦେଶପ୍ରୀତି ଉଜ୍ଜ୍ୱଳ ଉଠିଛି । ଗାଁ'ର ସ୍ତ୍ରୀ ଲୋକମାନଙ୍କୁ ସେ ସତ୍ ଶିକ୍ଷା ଦେଇଛି । "ଆପଣା ଦେଶ କମିତି ଭଲ ହେବ, ଲୋକେ ଆପଣା ଦେଶ ଜିନ ବେହାର କଲେ କ'ଣ ଫଳ ହେବ ସେ ସବୁ କହିଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ ପୃ-୭୬) କେବଳ କଥାରେ ନୁହେଁ, ରତମା କାର୍ଯ୍ୟରେ ମଧ୍ୟ ତାହା

କରିଛି । ନିଜେ ଅରଟରେ ସୂତାକାଟି ଖଦଡ଼ଲୁଗା ପିନ୍ଧିଛି । ତା ମତରେ "ଆମେ ତନ୍ତୀ ଜାତି । ଆମ ଚଉଦ ପୁରୁଷ ମୋଟ ଖଦି ପିନ୍ଧି ଆସିଛନ୍ତି । ଏ ହେଲା ଆମ ବାରି କପାରୁ ତିଆରି । ମୁଁ ନିଜେ କାଟିଛି । ଆମେ ଲାଜ ଘୋଡ଼େଇବା ପାଇଁ ପର ଦୁଆରକୁ ଯିବୁ କାହିଁ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ-୭୬)

ନିକର୍ମା ହୋଇ ଘରେ ବସି ରହିବାକୁ ସେ ମଧ ପସନ୍ଦ କରିନାହାଁନ୍ତି । ରତ୍ନମା ମତରେ—"ଅଳସୁଆ ହୋଇ ମେଜ ଚଉକିରେ ହାତଗୋଡ଼ ଯୋଡ଼ି ବସିଲେ ମଣିଷ ମଣିଷ ହୁଏ ନାହିଁ । ହାତେ ଅରଜିବୁ, ହାତେ ଖାଇବୁ । ଗୋଡ଼ ହାତ ବାନ୍ଧି କାଠମୂର୍ତ୍ତି ଟାପରି ବସିବାଟା ମଣିଷଙ୍କୁ ଅଶୋଭା । ସେଥିରେ ମଣିଷପଣିଆ ନଷ୍ଟ ହୁଏ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ ପୃ ୮୧)

ଔପନ୍ୟାସିକା କୁନ୍ତଳା କୁମାରୀଙ୍କ ଉପନ୍ୟାସର 'ରତ୍ନମା' ଏକ ଅପୂର୍ବ ସୃଷ୍ଟି । ପରାଧୀନ ଭାରତ ଭୂମିରେ ରତ୍ନମାପରି ସାହସୀ ନାରୀର ଅଭାବ ହୁଏତ ସେ ଅନୁଭବ କରିଛନ୍ତି । ନାରୀକୁ ସତ୍‌ଶିକ୍ଷା ଦେଇ, ନାରୀ ଭିତରେ ଲୁକ୍‌କାୟିତ ଥିବା ପ୍ରତିଭାର ବିକାଶ ନିମନ୍ତେ ସେ ଚେଷ୍ଟା କରିଛନ୍ତି । ପତ୍ନୀକୁ ପ୍ରକୃତ ସହଧର୍ମିଣୀର ମର୍ଯ୍ୟାଦା ନ ଦେଲେ ଜାତି ଅଗ୍ରଗତି କରିପାରିବ ନାହିଁ—ଏ ଧାରଣାର ବଶବର୍ତ୍ତିନୀ ହୋଇ ସେ ରତ୍ନମାପରି ଏକ ସୁନ୍ଦର ନାରୀ ଚରିତ୍ରର ସର୍ଜନା କରିଥିବା ଅନୁମେୟ । କଥାକାର ଫକୀରମୋହନଙ୍କ 'ସାନ୍ତ୍ରି ପୁଅ ଅନନ୍ତା'ର ପ୍ରଭାବ ଏହି ଉପନ୍ୟାସରେ ପ୍ରଚ୍ଛନ୍ନ ଭାବେ ପଡ଼ିଥିବା ଲକ୍ଷ୍ୟ କରାଯାଏ ।

**ଜେମା** :— 'ରଘୁଅରକ୍ଷିତ' ଉପନ୍ୟାସର ଜେମା ଫକୀରମୋହନଙ୍କ ଚମ୍ପା ଚରିତ୍ରର ଅନୁରୂପ । ଟିକିଏ 'ବାହାବା' ପାଇବା ପାଇଁ, ଟିକିଏ ସ୍ୱାର୍ଥ ପାଇଁ ଏମାନେ ପରର ଘୋର ଅମଙ୍ଗଳ କରନ୍ତି । ନିଜ ସ୍ୱାର୍ଥ ସିଦ୍ଧିପାଇଁ ଅନ୍ୟର ଜୀବନ ନାଶ କରିବା ନିମିତ୍ତ ଏମାନଙ୍କର ଟିକିଏ ହେଲେ କୁଣ୍ଠା ନ ଥାଏ । ଏମାନଙ୍କର ହୃଦୟ ବଜ୍ରଠାରୁ କଠିନ । ଶଙ୍କରକୁ ଖୁସି କରିବାପାଇଁ ଜେମା ନିଜ ହାତରେ ସୁକୋମଳ ଅମୂଲ୍ୟମୋହନକୁ ବିଷ ଖୁଆଇ ଦେଇଛି ।

ଟେଗହ୍ନେଇ ଓ ରାଧାମଣି :—'ନଅତୁଣ୍ଡୀ' ଉପନ୍ୟାସର ଟେଗହ୍ନେଇ ଓ 'ରକ୍ତଅରକ୍ଷିତ' ଉପନ୍ୟାସର ରାଧାମଣି—ଉଭୟେ ଏକ ପ୍ରକାରର ନାରୀ । ନିଜେ କଳି କରିବା ଓ ଲଗେଇ ଜୁଟେଇ ଅନ୍ୟମାନଙ୍କ ମଧ୍ୟରେ କଳି କରାଇବା ଏମାନଙ୍କର ମୁଖ୍ୟ ଲକ୍ଷ୍ୟ । ସେଥିରେ ସେମାନେ ଆନନ୍ଦ ପାଆନ୍ତି ।

ଯୂଥିକା ଓ ଫୁଲମଞ୍ଜରୀ : 'ରକ୍ତ ଅରକ୍ଷିତ' ଉପନ୍ୟାସର ଏହି ଦୁଇଟି ନାରୀ ଇତର ଶ୍ରେଣୀର । ଏମାନେ ସୁସ୍ଥ ସବଳ ସମାଜକୁ ଦୁର୍ବଳ କରନ୍ତି, କଳଙ୍କିତ କରନ୍ତି । ଏମାନେ ନିଜେ ଯେଉଁ ବାଟରେ ଯାଆନ୍ତି ଅନ୍ୟମାନଙ୍କୁ ସେଇ ବାଟରେ ଘୋଷାରିବାକୁ ଭଲ ପାଆନ୍ତି । ତେଣୁ ସମାଜର ସତୀ ସାଧ୍ୱୀ ନାରୀମାନଙ୍କୁ ଏମାନେ ବାଟ ଭୁଲାଇ ପଥଭ୍ରଷ୍ଟା କରନ୍ତି । ଏଥିରେ ସେମାନେ ଅଶେଷ ଆନନ୍ଦ ପାଆନ୍ତି । ଯୂଥିକା ସେହି ପ୍ରକାରର ଏକ ନାରୀ । କଲିକତାରେ ଚରିତ୍ରହୀନ ଜ୍ୟୋତିଷ ଡାକ୍ତର ପାଖରେ କିଛିଦିନ ରହିଲା ପରେ ନିଜକୁ ପାସ୍‌କରା ନର୍ସ ବୋଲି ପରିଚୟ ଦେଇଛି । ଜ୍ୟୋତିଷବାବୁଙ୍କ ଅନ୍ତରଙ୍ଗ ବନ୍ଧୁ ଦିବାକର ମିଶ୍ର ସହିତ ତା'ର ପରିଚୟ ହେଲା ପରେ ତାଙ୍କ ସାଥିରେ ଯୂଥିକା ଦିବାକରଙ୍କ ଉଆସକୁ ଚାଲି ଆସିଛି । ଦିବାକରଙ୍କ ଭବନକୁ ଆସିଲା ପରେ ସେ ତାଙ୍କର ବିଧବା ଭଉଣୀ ଫୁଲମଞ୍ଜରୀର ଏକାନ୍ତ ଆତ୍ମୀୟ ହୋଇ ଉଠିଛି । "ତା'ପରି ସରଳା, ମିଷ୍ଟଭାଷିଣୀ, ମଧୁର ପ୍ରକୃତିର ସ୍ତ୍ରୀଲୋକ ସହିତ କାହାର ବା ବନ୍ଧୁତ୍ୱ ନ ହେବ ? ଯୂଥିକା ସର୍ବଦା ବଡ଼ ବଡ଼ ସ୍ୱପ୍ନ ଦେଖେ—ବଡ଼ ବଡ଼ କଥା କହେ । ଦୈନିକ ଖବରକାଗଜ ପଢ଼ିବା ତା'ର ଅଭ୍ୟାସ । ଦେଶର ବର୍ତ୍ତମାନ ଦୁର୍ଦ୍ଦଶା କଥା ଭାବି ତା' ଆଖିରେ ପାଣି ଜମିଯାଏ । ତା'ର ଖଣ୍ଡ ବକ୍ତୃତା ଶୁଣି ସୁରଞ୍ଜନ ଓ ଫୁଲମଞ୍ଜରୀ ତାକୁ ଦେବୀ ଜ୍ଞାନକରି ପୂଜା କରୁଥିଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୬୮) ଅବାଟରେ ପାଦ ଦେବାପାଇଁ ଫୁଲମଞ୍ଜରୀକୁ ସେ ପ୍ରେରଣା ଦେଇଛି । ସୁରଞ୍ଜନର ପ୍ରେମରେ ବୁଡ଼ି ରହିଥିବା ଫୁଲ ସୁରଞ୍ଜନ ତ୍ୟାଗକରି ଅନ୍ୟତ୍ର ବିବାହ କରିଛି । ଫୁଲ ଦୁଃଖରେ ସମସ୍ତ କଟାଇଛି । ଯୂଥିକା ତାକୁ ପ୍ରବୋଧନ ଦେଇ କହିଛି—"ଆଜି କ'ଣ ପୃଥିବୀରେ ମଣିଷ ନାହାନ୍ତି ? ତୋର ଏତେ ରୂପ, ଏତେ ଗୁଣ । ଏ ଓଡ଼ିଶା ବୋଲି ।" (କୁନ୍ତଳାକୁମାରୀ

ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୨୮୬) । ପ୍ରଥମେ ପ୍ରଥମେ ଫୁଲମଞ୍ଜରୀ ଯୂଥିକା କଥାରେ ଗଣ୍ଡ ହେଲନାହିଁ । ମାତ୍ର ପରେ କଲିକତାରେ ରହିଣି ସମସ୍ତଙ୍କର ସେ ଯୂଥିକାର ଫାନ୍ଦରେ ପଡ଼ିଛି । ଜ୍ୟୋତିଷୀ ଡାକ୍ତରର ନକଟରେ ହୋଇଛି । ତା'ର ଗୋଡ଼ ଅବାଟକୁ ଖସି ଖସି ଯାଇଛି । ଯୂଥିକା ତା' ମନକଥା ଜାଣିଛି । ଜ୍ୟୋତିଷ ଡାକ୍ତରର ପରମଆତ୍ମୀୟା ସାଜି ଯୂଥିକା ଫୁଲମଞ୍ଜରୀ ସାହାଯ୍ୟରେ ଅନେକ ଧନରତ୍ନ ଶ୍ୱେଚ୍ଛାକରେ ଆସାମ ପଳାଇଛି । ଶିଲ୍‌ହଟରେ ଫୁଲମଞ୍ଜରୀ ମିସନ୍‌ବୋର୍ଡ଼ିଂରେ ଆଶ୍ରୟ ପାଇଛି । ସେଠାରେ ସେ ଖ୍ରୀଷ୍ଟିୟାନ୍ ହୋଇଛି ଏବଂ ତା'ର ମନ ପରିବର୍ତ୍ତନ ହୋଇଛି । ପରେ ଡଃ ସେନ୍‌ଙ୍କୁ ସେ ବିବାହ କରି ସୁଖମୟ ଦାମ୍ପତ୍ୟ ଜୀବନ ଅତିବାହିତ କରିଛି ।

ଔପନ୍ୟାସିକା କୁନ୍ତଳାକୁମାରୀଙ୍କ ଧାରଣା ଥିଲା ମଣିଷ କୁସଙ୍ଗରେ ପଡ଼ି ନିଜର ଧର୍ମ ହରାଏ, ଅବାଟରେ ଯାଏ, ମାତ୍ର ସୁସଙ୍ଗ ଲାଭ କଲେ ମଣିଷ ପୂତିଗନ୍ଧମୟ ନର୍କରୁ ଉଦ୍ଧାର ପାଇ ସ୍ୱର୍ଗୀୟ ଗୁଣାବଳୀରେ ମଣ୍ଡିତ ହୁଏ । କୁନ୍ତଳାକୁମାରୀ ସମାଜରୁ କୁସଂସ୍କାର ଦୂର କରି ଏକ ସୁନ୍ଦର ସଂସ୍କୃତ ସମାଜ ଗଠନ କରିବାକୁ ଚାହୁଁଥିଲେ । ସୁତରାଂ ଦୁଃଶ୍ଚରିତା ନର୍କଗାମୀ ଫୁଲ-ମଞ୍ଜରୀକୁ ସେ ଦେବତୁଲ୍ୟ ଡାକ୍ତର ସେନ୍‌ଙ୍କ ସହିତ ବିବାହ କରାଇ ଦେଇଛନ୍ତି । ଡାକ୍ତର ସେନ୍‌ଙ୍କ ସଂସ୍ପର୍ଶରେ ଆସି ଫୁଲମଞ୍ଜରୀ ପରିବର୍ତ୍ତିତ ହୋଇଛି । ସେମାନଙ୍କର ଦାମ୍ପତ୍ୟ ଜୀବନ ସୁଖମୟ ହୋଇଛି ।

## ଧନୀଗୃହର ସୁଖାନ୍ୱେଷୀ ନାରୀ ସମାଜ :

କୁନ୍ତଳାକୁମାରୀଙ୍କ ଉପନ୍ୟାସ ସମୂହରେ କେତେକ ନାରୀ ଦେଖାଯାନ୍ତି, ଯେଉଁମାନେ ହଳଲ ପାଣିକ ଗୋଡ଼ ବଢ଼ାନ୍ତି ନାହିଁ । ଶାରୀରିକ ଶ୍ରମକୁ ଏମାନେ ଘୃଣା କରନ୍ତି । ଆରାମରେ ଖାଇପିଇ ଖଟ ପଲଙ୍କରେ ଶୋଇ ଏମାନେ ଦିନ କଟାନ୍ତି । ସେମାନଙ୍କ ଦେହରେ ସୂର୍ଯ୍ୟକିରଣ ପଡ଼େନାହିଁ । ବାହାର ଦୁନିଆଁ ଏମାନଙ୍କୁ ଅଜଣା । ତାସ୍ ପଶାପାଲି ଖେଳରେ ମଜ୍ଜି ରହି ଏମାନଙ୍କ ଦିନ କଟେ । ଐଶ୍ୱର୍ଯ୍ୟ ମଧ୍ୟରେ ବୁଡ଼ିରହି ଏମାନଙ୍କର ମଣିଷପଣିଆ ଟିକକ ନଷ୍ଟ ହୋଇ ଯାଇଥାଏ । ସୁତରାଂ ଏହିମାନେ ସମସ୍ତ ଦୁଷ୍କର୍ମର ହେତୁ ହୋଇଥାନ୍ତି । 'ନଅତୁଣ୍ଡୀ' ଉପନ୍ୟାସର

ଜମିଦାର ବଧୂ ଉମା, ବ୍ରଜବନ୍ଧୁଙ୍କ ପରିବାରର ସ୍ତ୍ରୀବର୍ଗ, 'କାଳବୋହୂ'ର ମିଶ୍ର ପରିବାରର ସ୍ତ୍ରୀବର୍ଗ ଏହି ପର୍ଯ୍ୟାୟର ଅନ୍ତର୍ଭୁକ୍ତ ।

ଜମିଦାର କୃଷ୍ଣଚନ୍ଦ୍ରଙ୍କ ସ୍ତ୍ରୀ ଉମା—ବଡଘର ଝିଅ, ବଡଘର ବୋହୂ । ସେ ରୂପବତୀ ମଧ୍ୟ, ମାତ୍ର ଆଦର୍ଶବାଦୀ ସ୍ୱାମୀର ମନକୁ ସେ ପାଇନାହାନ୍ତି । ଆଳସ୍ୟ ହେତୁ ତା'ର ଶରୀର ସବୁବେଳେ ରୋଗଗ୍ରସ୍ତ ହୋଇଛି । ବିଳାସ ବ୍ୟସନରେ ସମସ୍ତ ଅତିବାହିତ କରୁଥିବାରୁ ମାନସିକ ଶାନ୍ତି ମଧ୍ୟ ସେ ପାଇପାରି ନାହିଁ । ସ୍ୱାମୀ ତାକୁ ଶିକ୍ଷା ଦେବାର ସୁବନ୍ଦୋବସ୍ତ କରିବା ସତ୍ତ୍ୱେ ସେ ପାଠ ପଢ଼ିନାହାନ୍ତି । ଅରଟ ବୁଲାଇ ସୂତା କାଟି ନାହିଁ । ଉମାର କାର୍ଯ୍ୟକୁ ବ୍ୟଙ୍ଗକରି ଔପନ୍ୟାସିକା ଲେଖିଛନ୍ତି—"ସାଆନ୍ତାଣୀ କହିଲେ, ମୁଁ କ'ଣ ତନ୍ତିଆଣୀ, ମୁଁ ବସି ସୂତା କାଟିବି । × × × ଥରେ ସ୍ୱାମୀଙ୍କ ବଳାକୋରରେ ଚରଖା ବୁଲାଇଥିଲେ; ହାତ କ'ଣ ହେଲା, ଖୁଆ ଫାଟିପଡିଲା କହି କାନ୍ଦିଲେ । ମହାନାରାୟଣ ତୈଳ ମାଲିସ୍ କରି ସେକଦେଇ ଓଜନଦିନରେ ସେ ଭଲ ହେଲେ । ଖୁଆରୁ ଦରଜ ଛାଡ଼ିଲା ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୬୦) ।

## ପୁରୁଷ ଚରିତ୍ର :

କୁନ୍ତଳାକୁମାରୀଙ୍କ ଉପନ୍ୟାସରେ ନାରୀ ଚରିତ୍ର ପରି ପୁରୁଷ ଚରିତ୍ର ଚିତ୍ରଣ ଏତେ ବାସ୍ତବ ବା ଜୀବନ୍ତ ହୋଇପାରି ନାହିଁ । ତାଙ୍କର ପୁରୁଷ ସାଧାରଣତଃ ଭୀରୁ, ଭାଗ୍ୟବାଦୀ । ପରିସ୍ଥିତିକୁ ମୁକାବିଲା କରିବା ପାଇଁ ତାଙ୍କ ପୁରୁଷଠାରେ ସାହସ, ଦମ୍ଭ ବା ଧୈର୍ଯ୍ୟ ନାହିଁ । 'ଭ୍ରାନ୍ତି'ର ନାୟକ ଅନଙ୍ଗମୋହନ ଓ 'ରଘୁଅରକ୍ଷିତ' ଉପନ୍ୟାସର ନାୟକ ରଘୁ, 'ପରଶମଣି'ର ବିମ୍ବାଧରକୁ ଏହି ଦୃଷ୍ଟିରୁ ବିଚାର କରାଯାଇ ପାରେ ।

**ଅନଙ୍ଗମୋହନ** :—ଆଧୁନିକ ଉଚ୍ଚଶିକ୍ଷାପ୍ରାପ୍ତ ଯୁବକ ଅନଙ୍ଗମୋହନ । ତାହାଠାରୁ ଅନେକ କିଛି ଆଶା କରାଯାଉଥିଲା, ମାତ୍ର ଗୋଟିଏ ଛୋଟ ଘଟଣାର ସତ୍ୟାସତ୍ୟ ନ ବୁଝି ନ ବିଚାରି ଅଧୈର୍ଯ୍ୟର ସହିତ ଯେଉଁଭଳି ସେ ଦେଶାନ୍ତର ହୋଇଛି ତାହା ତା'ର ସ୍ୱଳ୍ପବୁଦ୍ଧିର ପରିଚୟ

ପ୍ରଦାନ କରେ । ଟିକଏ ଭୁଲ ଯୋଗୁ ସେ ନିଜର ବିପଦକୁ ନିଜେ ଡାକି ଆଣିଛି । ନିଜର ଭୁଲ ପାଇଁ ପରେ ଅନୁତାପ କରିଛି ।

ରଘୁନାଥ :—ପିଲାଟିଦିନୁ ବାପ, ମା', ଭଉଣୀ ସମସ୍ତଙ୍କୁ ହରାଇ ଦାଦାଖୁଡ଼ୀଙ୍କ ନିକଟରେ ବଡ଼ ହୋଇଛି । ଦାଦା ହୃଷୀକେଶ ସାଙ୍ଗରେ ଗାଁ'ରୁ କଟକକୁ ଆସିଛି । ଦାଦାଦ୍ୱାରା ନିର୍ଯ୍ୟାତିତ ହୋଇ ଶେଖର ବୈଦ୍ୟଙ୍କ ପରିବାରରେ ଆଶ୍ରୟ ନେଇଛି । ସେଠାରୁ ଯାଇ ଜଗନ୍ନାଥ କବିରାଜ ଓ ତାଙ୍କ ସ୍ତ୍ରୀ ତାରାମଣିଙ୍କ ସ୍ନେହ ଆଦର ପାଇ ବଡ ହୋଇଛି । ପାଠ ପଢ଼ିଛି । ଶେଖର ବୈଦ୍ୟଙ୍କ କନ୍ୟା ସୀତାକୁ ସେ ଭଲ ପାଇଛି । ମାତ୍ର ସେହି ଭଲ ପାଇବା କେବଳ ଭଲ ପାଇବାରେ ହିଁ ରହିଯାଇଛି । ସୀତା ନିଜ ଗଳାରୁ ମାଳକାଢ଼ି ରଘୁ ଗଳାରେ ଲମ୍ବାଇ ଦେବା ସତ୍ତ୍ୱେ ମଧ୍ୟ ରଘୁ ନିର୍ବିକାର ରହିଛି । ଘରେ କବାଟକିଳି ଆଖିରୁ କେବଳ ଲୁହ ଗଡ଼ାଇଛି । ସେ ଖାଲି, ନାୟକଠାରେ ଯେଉଁ ଶୌର୍ଯ୍ୟ, ଧୈର୍ଯ୍ୟ ଓ ଧୃତି ରହିବାକଥା ତାହା ରଘୁଠାରେ ଆଦୌ ନାହିଁ । ଭାଗ୍ୟ ହାତରେ କ୍ରୀଡ଼ନକ ସାଜି ସେ କଲିକତା ଓ ପରେ ସୁଦୂର ବର୍ମା ସହରରେ ଜୀବନ ଯାପନ କରିଛି । ରୂପବାନ୍ ଧୀର ଶାନ୍ତ ଯୁବକ ରଘୁନାଥ । ସେ ଜୀବନ ସହିତ ସଂଗ୍ରାମ କରିନ । କୌଣସି ଏକ ବିପଦର ସମ୍ମୁଖୀନ ହେଲାବେଳେ ଭାଗ୍ୟଦେବୀଙ୍କ କୃପାରୁ ଏକ ଅଯାଚିତ ହସ୍ତ ଆସି ସେହି ବିପଦରୁ ତାକୁ ଉଦ୍ଧାର କରିଛି । ବିପଦର କଷଟିରେ କଷିହୋଇ ମଣିଷଠାରେ ଯେଉଁ ଉଜ୍ଜ୍ୱଳ ଜ୍ୟୋତି ନିର୍ଗତ ହୁଏ, ତାର ଔଜଲ୍ୟରେ ମାନବର ସମଗ୍ର ଜୀବନସତ୍ତା ଉଦ୍‌ଭାସିତ ହୋଇଉଠେ, ସେହି ଔଜଲ୍ୟତା ରଘୁନାଥଠାରେ ଦେଖିବାକୁ ମିଳେନାହିଁ । ତା'ର ବ୍ୟକ୍ତିତ୍ୱର ବିକାଶ ଘଟିପାରି ନାହିଁ । ସୁତରାଂ ଏ ଚରିତ୍ରଟି ବାସ୍ତବବୋଲି ପ୍ରତୀୟମାନ ହୁଏନାହିଁ ।

ବଂଶୀଧର :—'ପରଶମଣି' ଉପନ୍ୟାସର ନାୟକ ବଂଶୀଧର । ଅନଙ୍ଗମୋହନ ଓ ରଘୁନାଥପରି ଏ ଚରିତ୍ରଟିରେ ମଧ୍ୟ ବାସ୍ତବତା ନାହିଁ । କେବଳ ଲଳିତା ଚରିତ୍ରକୁ ଅଧିକ ବାସ୍ତବ ଓ ଜୀବନ୍ତଭାବେ ପରିସ୍ଫୁଟ କରିବାପାଇଁ ବଂଶୀଧର ଚରିତ୍ରଟି ସୃଷ୍ଟି ହୋଇଥିବା ମନେହୁଏ । ସ୍ତ୍ରୀ ଓ ପିଲାମାନଙ୍କ ପ୍ରତି ନିଜର କର୍ତ୍ତବ୍ୟ ସ୍ଥିର କରିନାହିଁ । ମା'କୁ ପଦେହେଲେ ବୁଝାଇ ପାରିନାହିଁ । ଅଧିକନ୍ତୁ ସୁଖ ସାଜରେ ମଜ୍ଜିରହି ନିଜର ଜୀବନକୁ

ବିପଦଗ୍ରସ୍ତ କରନ୍ତି । ନାୟକ ସ୍ୱଭାବରେ ସେ ଯେଉଁ ସାହସ, ଧୈର୍ଯ୍ୟ, ଶୌର୍ଯ୍ୟ ଓ ବୀର୍ଯ୍ୟର ଅଧିକାରୀ ହେବାକଥା ସମ୍ଭାଧରଠାରେ ତା'ର ଗୋଟିଏ ଲକ୍ଷଣ ନାହିଁ ।

## ଜମିଦାର, ଧନୀ ମହାଜନ ଗୋଷ୍ଠୀର ଚରିତ୍ର :

ଏହି ପର୍ଯ୍ୟାୟରେ 'କାଳିବୋହୂ' ଉପନ୍ୟାସର ଅଚ୍ୟୁତ ମିଶ୍ର ଓ 'ରଘୁଅରକ୍ଷିତ' ଉପନ୍ୟାସର ଚନ୍ଦ୍ରଶେଖର ଚୌଧୁରୀଙ୍କୁ ନିଆଯାଇପାରେ । ଏ ଦୁଇଟି ଚରିତ୍ରଙ୍କୁ ଫକୀରମୋହନ ସେନାପତିଙ୍କ 'ଛମାଣ ଆଠଗୁଣ୍ଠ' ଉପନ୍ୟାସର ନାୟକ ଜମିଦାର ରାମଚନ୍ଦ୍ର ମଙ୍ଗରାଜ ସହିତ ତୁଳନା କରାଯାଇପାରେ ।

**ଚନ୍ଦ୍ରଶେଖର ଚୌଧୁରୀ** :—ଜମିଦାର ରାମଚନ୍ଦ୍ର ମଙ୍ଗରାଜ-ପରି ଚନ୍ଦ୍ରଶେଖର ଚୌଧୁରୀ ଗରିବ ଘରର ସନ୍ତାନ ଥିଲେ । ଚୌଧୁରୀ ଘରର ଦାସୀ ଚମ୍ପାବୋଉ କଥାରୁ ଏହା ଜଣାଯାଏ ଯେ—

"ଚୌଧୁରୀଙ୍କ ଅସଲଘର ଭୁବନେଶ୍ୱର ଆଡ଼େ । ପିତାଙ୍କ ନାମ ଶଶିଶେଖର ଶତପଥି । ଶତପଥିଙ୍କ ସଂସାର ଅତି ଦରିଦ୍ର ଥିଲା । ଅନ୍ନ ବସ୍ତ୍ର ଅଭାବରେ କେବଳ ଗୁଡ଼ାଏ ଶ୍ଳୋକ ମୁଖସ୍ଥ କରି ଏ ଦୁଆର ସେ ଦୁଆର ବୁଲି ତାଙ୍କ ପେଟ ପୂରିଲାନାହିଁ । ବ୍ରାହ୍ମଣୀ ମଧ୍ୟ ଶିଶୁପୁତ୍ର ଚନ୍ଦ୍ରଶେଖର ଓ କନ୍ୟା ଲବଣୀକୁ ରଖି ଇହଧାମ ଛାଡ଼ି ଚାଲିଗଲେ । ପ୍ରୌଢ଼ ଶତପଥିଏ ଟଙ୍କା ଅଭାବରେ ଦଶ ବର୍ଷର ନୂଆ ବୋହୂଟିଏ ଆଣି ପାରିଲେ ନାହିଁ— ମନ ଦୁଃଖ ମନରେ ମାରି ରହିଲେ । ଲବଣୀର ବିବାହ ବୟସ ହେଲା । ଶତପଥି କନ୍ୟାପଣରେ ପଚିଶଟଙ୍କା ପାଇ ଦୋକାନକରି ବସିଲେ । ଦୋକାନ କରୁକରୁ ହାତରେ ଦି ପଇସା ହେଲା । ତହୁଁ ବାପପୁଅ କଟକ ବାହାର ଆସି ଧାନ ଗୁଡ଼ଳ ଦଣ୍ଡିବାର ଆରମ୍ଭ କଲେ । ଲକ୍ଷ୍ମୀ ପ୍ରସନ୍ନ ହେଲେ—ହାତରେ କିଛି ଟଙ୍କା ହେଲା । ଅତି କଷ୍ଟରେ ଚଳି ସେ କଟକରେ ଦୋକାନଟିଏ ବସାଇଲେ । ଏହିପରି କରୁକରୁ ବୁଦ୍ଧିବଳରେ ଚନ୍ଦ୍ରଶେଖର କ୍ରମେ କ୍ରମେ ଜମିବାଡ଼ି ଓ କାଠକାରବାର ଆରମ୍ଭ କଲେ । ମହାନଦୀ କୂଳରେ କୋଠା ତିଆରି ହେଲା । ତାପରେ ସେ ଧର୍ମାତ୍ମା ସରସ୍ୱତୀଙ୍କୁ ଗୁଡ଼ିଏ ପଣ ଦେଇ ବିଭାହେଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ-୧୭୧)

ଶେଖର ଶ୍ରୌଧୁରୀ କଟୁରକର୍ମା । ଚିଲ ମାଛ ଖୋଜି ବୁଲିଲାପରି ସେ ନିଃସ୍ୱ ଅସହାୟ ବ୍ୟକ୍ତିଙ୍କର ମାଣେ ଅଧେ ଜମି ଖୋଜି ବୁଲନ୍ତି । ନିଜର ପାଣ୍ଡିତ୍ୟ ବଳରେ ଅନେକ ବିଷୟ ସମ୍ପତ୍ତି ସେ ଅର୍ଜନ କରିଛନ୍ତି । ମହାଜନୀ କରିଛନ୍ତି । ହେଲେ ବଡ଼ କୃପଣ ସେ । ଦରିଦ୍ର ଥିଲାବେଳେ ଯେପରି, ଧନୀ ହେଲାପରେ ମଧ୍ୟ ତାଙ୍କର ଠିକ୍ ସେହିଭଳି ଚଳଣି । ନିଜର ଖାଇବା, ପିଇବା, ପିନ୍ଧିବା ଲଗେଇବାରେ ସେ ମଧ୍ୟ କୁଣ୍ଠିତ । "ପଇସା ପତରକୁ ତାଙ୍କର ବଡ଼ ଆଖି । ମୋଟ ଖଦି ଛଡ଼ା ବିଲାତିଧୋତି, କି ସରୁଚଦର କେବେ ସେ ପିନ୍ଧନ୍ତି ନାହିଁ । ସୋଣ୍ଡିଷତେଲ ନେଡ଼ିଏ ଛଡ଼ା ସାବୁନ ବି ଆଖିରେ ଦେଖିପାରନ୍ତି ନାହିଁ । X X ସାଆନ୍ତେ ଭଲ ଖିଆପିଆ ଦେଖିପାରନ୍ତି ନାହିଁ । ଖଡ଼ା ସନ୍ତୁଳା ଶାଗଢେକେଗ ଖରଡ଼ା ହେଲେ, ଟିକେ ମୂଗ ପଇତିଟା, ଟିକେ ସାରୁ ଶୁଖୁଆ ବେସରଟା ହେଲେ ତାଙ୍କର ଭାରି ଆନନ୍ଦ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ, ପୃ-୧୭୧)

ଶ୍ରୌଧୁରୀ ପରଶ୍ରୀକାତର । ଏପରିକି ଘରର ଗୃହର ଗୃହବଣୀ-ମାନଙ୍କୁ ସେ ଦେଖି ପାରନ୍ତି ନାହିଁ । ଭଲରେ ମନ୍ଦରେ ସେମାନେ ମଧ୍ୟ ଭଲ ନୂଆଲୁଗା ଖଣ୍ଡେ ପିନ୍ଧି ପାରନ୍ତି ନାହିଁ । ଶ୍ରୌଧୁରୀଙ୍କୁ ଡ଼ରି ଚୁପ୍‌ଚାପ ରୁହନ୍ତି । ଶ୍ରୌଧୁରୀଙ୍କ ମତରେ—"ଜାଆଁ, ଝେଦିଟା ପିନ୍ଧିଲେ ଯେଉଁ ମଣିଷ, ଦଶହାତ ଲମ୍ବ, ପାଞ୍ଚହାତ ଓସାର ଧୋବଧାଉଳିଆ ପିନ୍ଧିଲେ ବି ସେହି ମଣିଷ । ଆମେ ଓଡ଼ିଆ, ଆମର ଏ ଢଙ୍ଗ—ଗୋଟାଏ କୋଟ୍, କାମିଜ, କୁଞ୍ଚଫେର ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟଖଣ୍ଡ, ପୃ-୧୭୧)

ବଗଡ଼ା ବୈଷ୍ଣବ ସେ । ଚଉବର ଚଣ୍ଡିଚପି ନିଜର ସମ୍ପତ୍ତି ବଢ଼ାନ୍ତି । ସେ ଦାନ ଧ୍ୟାନଠାରୁ ବହୁ ଦୂରରେ ଥାନ୍ତି । ମାଳଂଗୁଣ୍ଡିରେ ହରିନାମ । ଦେହରେ ଚନ୍ଦନ ଛାପା । "ନିତି ନିତି ସନ୍ଧ୍ୟା ପୂଜା ନ କଲେ ସେ ପାଣି ଛୁଅଁନ୍ତି ନାହିଁ । କପାଳରେ, ଚୁଣ୍ଡିରେ ପଟାଏ ପଟାଏ ଚନ୍ଦନ ହଳଦ କାଟିଥାନ୍ତି; କଥା ପଦକେ 'ହରିଶିବ' । ଚଣ୍ଡିଚପି, ଅଧୀନର ଦାନକାଟି ଅନାଥ ଛେଉଣ୍ଡଙ୍କ ଜମି ମାଣେ ହେଉ ପଛେ, ଚଢ଼ବାଡ଼ ପକାଇ ଭିଡ଼ିଭାଇ ନେବାକୁ ସେ ଭଲକରି ଜାଣନ୍ତି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ ପୃ-୧୭୧) ·

ତିନି ଝିଅ ଓ ଗୋଟିଏ ପୁଅର ବାପ ଏହି ଶେଖର ଚୌଧୁରୀ । ପିଲାମାନଙ୍କ ସୁଖ ମଧ୍ୟ ସେ ଦେଖି ନାହାନ୍ତି । ଟଙ୍କା ହିଁ ତାଙ୍କର ସର୍ବସ୍ୱ । ଅନେକ ଟଙ୍କା ପଣନେଇ ଝିଅମାନଙ୍କୁ ଅପାତ୍ରରେ ଦାନ କରିଅଛନ୍ତି । ସ୍ତ୍ରୀ ସରସ୍ୱତୀଙ୍କର କଥା ସେ ଶୁଣି ନାହାଁନ୍ତି ବରଂ ରଘୁନାଥ ପରି ସତ୍‌ପାତ୍ରରେ କନ୍ୟାଦାନ କରିବାପାଇଁ ସ୍ତ୍ରୀ ଅନୁରୋଧ କଲାବେଳେ ସେ ତାହା ପ୍ରତ୍ୟାଖ୍ୟାନ କରିଛନ୍ତି । ସରସ୍ୱତୀଙ୍କଠାରୁ ଦୁଇଶହ ପଣ ଟଙ୍କା ଶୁଣି ସେ ରାଗରେ ଜଳି ଉଠିଛନ୍ତି । "ଚଉଧୁରୀ ଘର ଗୁଣ୍ଡାଟା ହାତରେ ଧରିଥିଲେ । ଟଙ୍କା ଦୁଇଶ କଥା ଶୁଣି ରାଗିଯାଇ ଆକାଶରେ ଛୁଆଁଉ ଦେଲେ, କହିଲେ ସୀତିଆକୁ ଦୁଇଶ ଟଙ୍କା ଜମା ! ଗୋଡ଼ ହାତ ବାନ୍ଧି ମହାନଦୀରେ ଭସାଇ ଦେଇ ଆସ । ବାପ ଲକ୍ଷପତି; ମାଁ ହବ—ଦି'ଶଟା ଟଙ୍କାରେ ଝିଅ ବିକିବ । ଧିକ୍ ଧିକ୍, ଅନା ପନ୍ଦରଶ ଛ'ଶ ନ ହେଲେ ତ ମୁଁ ଆଦୌ ଦେବି ନାହିଁ । କି ସାଇ ବାହାବେଳକୁ ବରକୁ ମନେ ନାହିଁ କମିତି ଧପଟା ହରବର କରିଥିଲି ? ତିନିଶ ଟଙ୍କା ନଗଦ ଥୋଇଲାରୁ ତେବେ ବରଣ କରିଦେଲି । ତୁମେ ମାଇପି ଲୋକ କ'ଣ ବୁଝିବ ? ଆମର ବ୍ରାହ୍ମଣିଆ ଘର—ଯେତେ ଟଙ୍କା ପଣ, ଝିଅର ସେତିକି ମୂଲ୍ୟ । ଖୁଆଇ ପିଆଇ କ'ଣ ମିଛରେ ଏଡ଼େରୁ ଏଡ଼େଟା କଲି ? କଡ଼ା ଗଣ୍ଡା ବୁଝି-ନେବ । (କୁନ୍ତଳା କୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ ପୃ-୨୦୧) ଏଥିରୁ ଶେଖର ଚୌଧୁରୀର ହୀନମନ୍ୟତା ଓ ସ୍ୱାର୍ଥପରତା ସହଜରେ ଅନୁମେୟ ।

ଶୋଷକ ଶେଖର ଚୌଧୁରୀ ଦରିଦ୍ର ଅସହାୟ ବ୍ୟକ୍ତିର ଆତଙ୍କ । ନିଜର ପୁତ୍ର କନ୍ୟାମାନଙ୍କର ସକଳ ଦୁର୍ଯୋଗର ହେତୁ, ଦେବୀ ପ୍ରତିମା ସ୍ତ୍ରୀ ସରସ୍ୱତୀଙ୍କର ମୃତ୍ୟୁର କାରଣ । ଟଙ୍କା ସୁନା ପଛରେ ଗୋଡ଼ାଇ ଗୋଡ଼ାଇ ସେ ଅଣନିଃଶ୍ୱାସୀ ହୋଇଛନ୍ତି । ପେଟପୂରାଇ ଭଲରେ ଗଣ୍ଡାଏ ଖାଇନାହାଁନ୍ତି କି ଖଣ୍ଡେ ପିନ୍ଧିପାରି ନାହାଁନ୍ତି । ନିଜ ପରିବାର ବିଷୟରେ ସେ ଥରୁଟିଏ ବି ଚିନ୍ତାକରିବାକୁ ଅବସର ପାଇନାହାଁନ୍ତି । ମାତ୍ର ଲକ୍ଷ୍ମୀଙ୍କର ବରପୁତ୍ର ଏହି ଚୌଧୁରୀଙ୍କର ଶେଷ ସମୟ ଅତି କରୁଣମୟ । ବାତାକ୍ରାନ୍ତ ହୋଇ ଅଶେଷ ଯନ୍ତ୍ରଣା ଭୋଗକରି ଅନୁତାପ ଅନଳରେ ସେ ଦଗ୍ଧ ହୋଇଛନ୍ତି । ପାଖରେ ସେବା କରିବାକୁ ନିଜର ଅବହେଳିତା କନ୍ୟା ସୀତା ବ୍ୟତୀତ ଆଉ କେହି ନାହିଁ । "ବୃଦ୍ଧ ଅକର୍ମଣ୍ୟ ବାତାକ୍ରାନ୍ତ ହୋଇ ପଡ଼ିରହିଛି । ସେ ବୁଢ଼ା ତାହାର କୃତକର୍ମର ଅନୁତାପ ଲାଗି, ପ୍ରାୟଶ୍ଚିତ୍ତ

ଲାଗି, ପୁଅ ଓ ପୁଅବଧୂର ନର୍ଯ୍ୟାତନା ଭୋଗକରି ପତ୍ରରହିଛି ଗୋଟି ଗୋଟି ପୂର୍ବକଥା ସ୍ମରଣ କରିବା ଲାଗି ।” (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ ୩୬୧) ଔପନ୍ୟାସିକାଙ୍କର ସଞ୍ଜୀବନୀ ସ୍ପର୍ଶରେ ଉକ୍ତ ଚରିତ୍ରଟି ଜୀବନ୍ତ ଓ ସ୍ପଷ୍ଟ ।

**ଅଚ୍ୟୁତ ମିଶ୍ର :**—“କାଳିବୋହୂ” ଉପନ୍ୟାସର ଅଚ୍ୟୁତ ମିଶ୍ର ଲମ୍ପଟ, ଅତ୍ୟାଗୃହୀ, ଶୋଷକ ଶ୍ରେଣୀର ପ୍ରତିନିଧି । “ମିଶ୍ରେ ଧନୀ ମହାଜନ । ଚାଷରୁ ବର୍ଷକୁ ଲକ୍ଷାଧିକ ଟଙ୍କା ଆମଦାନୀ ହୁଏ । ଗୁହାଳରେ ଅସଂଖ୍ୟ ଗାଈ ବାଛୁରି ଥିବାରୁ ଦୁଧ ଦହିରେ ଘର ଉଚ୍ଛୁଳି ପଡ଼େ । ଘରେ ଦାସ ଦାସୀ ପୋଇଲି ପରିବାରୀ ହଳିଆ ମୂଲିଆର ଅଭାବ ନାହିଁ । ହେଲେ ନିଃସ୍ୱ ଦରିଦ୍ର ଶ୍ରେଣୀର ଲୋକଙ୍କ ଉପରେ ତାଙ୍କର ଅତ୍ୟାଚାର କମ୍ ନ ଥିଲା । ଉପରେ ଭକ୍ତ ଧାର୍ମିକ ବ୍ୟକ୍ତିର ଛଦ୍ମବେଶ ଭିତରେ ଶହଶହ ଦୁଃଷ୍କର୍ମ କରୁଥିଲେ । ଅନ୍ୟର ସର୍ବସ୍ୱ ହରଣ କରିବାକୁ ତାଙ୍କର ଛଳେ-ହେଲେ କୁଣ୍ଠା ନ ଥିଲା । ଯଦ୍ୟପି ମିଶ୍ରେ ଦୁଇଘଣ୍ଟା ପୂଜା କରୁଥିଲେ, ନାମର ମାଳୀ ଗୋଟୁଥିଲେ, ଗେରୁଆ ବସ୍ତ୍ର ପିନ୍ଧୁଥିଲେ, ପ୍ରତ୍ୟେକ କଥାରେ ହରି ହରି, ଶିବଶିବ ହେଉଥିଲେ, ବିଧବାର ସର୍ବସ୍ୱ ହରଣ ବେଳକୁ, କୃଷକର ସର୍ବସ୍ୱ ଗ୍ରାସ କଲାବେଳକୁ, ଖାତକର ଖାତାରେ ନଅବାଡ଼ ସୁଧ କଷିଲାବେଳକୁ ତାଙ୍କ ଧର୍ମଟି ‘ଧ’ ଅକ୍ଷରରେ ପର୍ଯ୍ୟବେସିତ ହେଉଥିଲା । ଯାହାକୁ ଧରୁଥିଲେ ଅଷ୍ଟପାଦର ନାଗଫାଶରେ ଧରୁଥିଲେ । ଚାପି ଚାପି, ରକ୍ତଶୋଷି ଛାଡ଼ିବେ ଛାଡ଼ୁଥିଲେ ।” କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୯୦)

ମିଶ୍ରେ କେବଳ ଅତ୍ୟାଗୃହୀ ବା ଶୋଷକ ନ ଥିଲେ । ସେ ଥିଲେ ଚରିତ୍ରହୀନ ଲମ୍ପଟ । ନିଜର ଗୃହ ସ୍ତ୍ରୀ ଥିବା ସତ୍ତ୍ୱେ ତାଙ୍କ ଚରିତ୍ର ନିଷ୍କଳଙ୍କ ନଥିଲା । ସେଥିପାଇଁ ଅକାଳରେ ସେ ନାନାରୋଗର ଶିକାର ହୋଇଛନ୍ତି । ଏହି ସମୟରେ ତାଙ୍କର ଏକମାତ୍ର କନ୍ୟା ଲକ୍ଷ୍ମୀ ବିଧବା ହୋଇଛି । ସ୍ତ୍ରୀ କମଳାର ମୃତ୍ୟୁ ଘଟିଛି । ମିଶ୍ରେ ସାମୟିକଭାବେ ଆଘାତ ପାଇଛନ୍ତି । ଆଘାତର ଉପଶମପାଇଁ ତୀର୍ଥ ଦର୍ଶନ ଛଳରେ ଦେଶ ବୁଲି ବାହାରିଛନ୍ତି । ମାତ୍ର କିଛିଦିନ ପରେ ମିଶ୍ରଙ୍କର ପୂର୍ବରୂପ ପ୍ରକଟିତ ହୋଇଛି । ଏହି ପାପୀ ଅନାଗ୍ରହୀ ବ୍ୟକ୍ତିଟି ଜୀବନର ଶେଷାବସ୍ଥାରେ ଦୁଃସହ ପକ୍ଷାଘାତ ରୋଗରେ ପୀଡ଼ିତ ହୋଇ ଇହଧାମ ତ୍ୟାଗ କରିଛି ।

**ଜ୍ୟୋତିଷ ଠାକୁର**—ଅଚ୍ୟୁତ ମିଶ୍ର ଓ ଶେଖରଙ୍କ ଦ୍ୱାରା ଲିଖିତ ପର-'ରକ୍ଷିତ' ଉପନ୍ୟାସର ଜ୍ୟୋତିଷ ଠାକୁର ଏକ ନାରକୀୟ ଚରିତ୍ର । ତାପରେ ଭଦ୍ରତାର ସୀମା ନାହିଁ । ଭିତରେ ଖାଉଣ୍ଡତାର ଅନ୍ତ ନାହିଁ । ନାରୀର ସତୀତ୍ୱ ଲୁଣ୍ଠନ ତା'ର ନିତ୍ୟନୈମିତ୍ତିକ କାର୍ଯ୍ୟ । ସେଥିରେ ସେ ଅପାର ଆନନ୍ଦ ଲାଭ କରେ । ସୁରାପାନ କରି ସେ ନିଜକୁ ଭୁଲିଯାଏ । ନାରୀ ତା'ପାଇଁ କ୍ରୀଡ଼ାର ସାମଗ୍ରୀ ହୋଇ ଉଠେ । ନାରୀର ଖାଉଣ୍ଡ ଅଶ୍ଳୀଳ ଛବିଦେଖି ସେ ଆନନ୍ଦରେ ଅଧୀର ହୋଇ ଉଠେ । ଝିଅ, ମା ଓ ଭଉଣୀ, —ଏମାନଙ୍କର ଜାତିକୁ ବାରବନିତାର ଆସନରେ ଅଧିଷ୍ଠିତ କରି ସେ ହୃଦୟରେ ପରମ ତୃପ୍ତି ଲାଭ କରେ । ସୁତରାଂ ଏଭଳି ଚରିତ୍ର ଜାତି ତଥା ସମାଜ ପକ୍ଷେ କିଭଳି କ୍ଷତିକାରକ ତାହା ସହଜରେ ଅନୁମେୟ ।

**ଦିବାକର ମିଶ୍ର**—'ରକ୍ଷିତ ଅରକ୍ଷିତ' ଉପନ୍ୟାସର ଦିବାକର ମିଶ୍ର ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ଜମିଦାର । ବିଂଶ ଶତକର ଆଦ୍ୟ ପାଦରେ ଇଂରେଜୀ ଶିକ୍ଷା ଓ ସଭ୍ୟତାର ସ୍ରୋତ ସମଗ୍ର ଦେଶରେ ବହିଯାଇଛି । ଏହି ବିଦେଶୀ ସଭ୍ୟତାର କୁହକଚକ୍ରରେ ଅନେକ ଯୁବକ ନିଜର ପରମ୍ପରା ଓ ସଂସ୍କୃତିକୁ ଭୁଲିଯାଇଛନ୍ତି । ସୁରା ଓ ସାକୀରେ ମଜଗୁଲ୍ ରହି ନିଜର ଜୀବନକୁ ତିଳେ ତିଳେ ନଷ୍ଟ କରୁଛନ୍ତି । ଇଂରେଜୀ ଶିକ୍ଷା ନାମରେ ଏମାନଙ୍କ ଚରିତ୍ରିକ ଅଧୋଗତି ହିଁ ଘଟିଛି । ସାହେବୀ ଢାଞ୍ଚାରେ ବେଶ ପୋଷାକ ପିନ୍ଧି ଓ କଥାବାର୍ତ୍ତା କରି ନିଜକୁ ଆଧୁନିକ ଯୁଗର ସର୍ବଶ୍ରେଷ୍ଠ ସଭ୍ୟ ଯୁବକ ବୋଲି ଏମାନେ ପରିଚୟ ଦେବା ମଧ୍ୟରେ ନିଜର ଅଧୋଗତିକୁ ହିଁ ସୂଚାଇ ଦେଇଛନ୍ତି । ଇଂରେଜ ସଭ୍ୟତାର ଅନ୍ଧାନୁକରଣପ୍ରିୟ ଦିବାକର ମିଶ୍ର ତତ୍କାଳୀନ ସମାଜର ଏକ ସାର୍ଥକ ପ୍ରତିନିଧି । ସେ ଉଚ୍ଚଶିକ୍ଷିତ—କଲିକତା ୟୁନିଭରସିଟିରୁ ଏମ୍. ଏ. ଡ଼ିଗ୍ରୀଧାରୀ । ପଦ ପଦକେ କଥାରେ ଫାଟିଛି ଇଂରାଜୀ ବାହାରେ । ଏପରିକି ଓଡ଼ିଆ କହିଲବେଳେ ମଧ୍ୟ ଅଧା ବଙ୍ଗଳା ବାବୁଙ୍କ ପାଟିରୁ ବାହାରେ । ତାଙ୍କର ପାଶ୍ଚାତ୍ୟ ବେଶଭୂଷା ଢଙ୍ଗଢଙ୍ଗ ଓ ଚାଲିଚଳଣୀ ପ୍ରତି କଟାକ୍ଷପାତକରି ଔପନ୍ୟାସିକା ଲେଖିଛନ୍ତି— "ଆକାଶିଆ ପାନେ ଦୁଇପାନ ମଧ୍ୟ ଉଦରସ୍ଥ ହୋଇସାରିଛି । କଚେରୀ ଘରେ ସୁଦୃଶ୍ୟ ହାତୀଦାନ୍ତ ପଲଙ୍କରେ ବହୁମୂଲ୍ୟ ବିଛଣାରେ ଅର୍ଦ୍ଧଶାୟିତ ଅବସ୍ଥାରେ ସାଆନ୍ତେ ଆସୀନ । କଡରେ ଗ୍ଲେଜ ଅବଲୁସ୍ କାଠର ଟେବୁଲ୍

ଉପରେ ଲେଶ୍ ଶୁଦର ବସ୍ତ୍ର ହୋଇଛି । ତାହା ଉପରେ ରୁପା କେସ୍‌ରେ ସୁଗନ୍ଧ ସିଗ୍ରେଟ୍ । ରୁପା ରେକାବରେ ପାନ ଏବଂ କାଚ ଡିସ୍‌ରେ ଲାଲ୍ ରଙ୍ଗର ବ୍ରାଣ୍ଡି ବୋତଲ । ଏ ବ୍ରାଣ୍ଡି ଖାସ୍ କଲିକତାରୁ ମଗାଯାଏ । ଯାଆନ୍ତେ ମୁଁହରେ ସାହେବୀ ଢଙ୍ଗିଆ ପାଇପ୍ ଲଗାଇ ମନଖୁସିରେ ଥରେ ଅଧେ ଟାଣିଦେଇ ଧୂଆଁ ଛାଡୁଛନ୍ତି । ଭସ୍ ଭସ୍ ଚକଚକାର ଧୂଆଁ ଟା ଉପରକୁ ଉଠିଯାଉଛି । ସେତେବେଳକୁ ସନ୍ଧ୍ୟା ମଜଲ ଆସିଲାଣି । ଝାଡ଼ ଓ ଲଣ୍ଠନରେ ଆଲୁଅ ଜଳିଲାଣି, ତାହାର ଉଜ୍ଜ୍ୱଳ ରଶ୍ମି ହବାକର ମୁଖରେ ପଡ଼ି ପାଠକକୁ ଗୋଟିଏ ତିରିଶ ବତିଶି ବର୍ଷର ଗୌରସୁନ୍ଦର ଆଧୁନିକ ଯୁବକ ମୂର୍ତ୍ତି ଦେଖାଇ ଦେଉଛି । ଆଧୁନିକ କହିବାର ଅନେକ କାରଣ ଅଛି । ମୁଣ୍ଡର ବାଳକଟାଠାରୁ ଗୋଡ଼ର ଫିତାହୁଆ ମଖମଲ ପମ୍ପ୍‌ଶୁ ପର୍ଯ୍ୟନ୍ତ ସବୁ ଆଧୁନିକ । ଡାକେଇ ଧୋତି । ସେଣ୍ଟହୁଆ ରୁମାଲ ଲାଲମିଲି ବନିୟନ ଉପରେ ଚୁଡ଼ିଦାର ପଞ୍ଜାବି, ଆଖିରେ ସୁନା ଚଷମା, ବାମ-ହାତରେ ସୁନାର ଓସ୍ତେଷ୍ଟ ଏଣ୍ଡ ରିଷ୍ଟ ୱାଚ, ମୁହଁରେ ସିଗ୍ରେଟ ପାଇପ ଦେଖିଲେ ସେ ଓଡ଼ିଆରୂପୀ ବଙ୍ଗାଳୀ ବା ବଙ୍ଗାଳୀରୂପୀ ଓଡ଼ିଆ କିଛି ବୁଝାଯାଏ ନାହିଁ । ତଥାପି ଆମେ ଭଲରୂପେ ଜାଣୁ ସେ ଓଡ଼ିଆ ବ୍ରାହ୍ମଣ ସନ୍ତାନ । ତାଙ୍କର ନାଁ ହବାକର ମିଶ୍ର । କିନ୍ତୁ ସେ ସର୍ବଦା ନିଜକୁ ମିଷ୍ଟର ଡି. ମିଶ୍ର ଛଡ଼ା ହବାକର ବୋଲି କହିବାକୁ ନାରାଜ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୨୦୪/୨୦୫)

କେବଳ ସାହେବୀ ବେଶ ପୋଷାକ ନୁହେଁ, ମିଷ୍ଟର ମିଶ୍ରଙ୍କର ଚାରିତ୍ରିକ ସ୍ଖଳନ ମଧ୍ୟ ଘଟିଥିଲା । ତିରିଶ ବର୍ଷ ମଧ୍ୟରେ ସେ ତିନଥର ବିବାହ କରିଥିଲେ ମଧ୍ୟ ବେଶ୍ୟାସକ୍ତ ଥିଲେ । ଦ୍ୱିତୀୟ ସ୍ତ୍ରୀ ତାଙ୍କର ଯୌନତୃଷ୍ଣାକୁ ନିବାରଣ କରିବାକୁ ସମର୍ଥ ହୋଇପାରି ନଥିଲେ ମାତ୍ର ହବାକର ମିଶ୍ରଙ୍କର ପୁନର୍ବିବାହ କଥା ମନରେ ସ୍ଥାନ ପାଇନଥିଲା । "କାରଣ ବିବାହରେ ତାଙ୍କର ପ୍ରୟୋଜନ ନଥିଲା । ଗୃହ ଦାସଦାସୀରେ ପୂର୍ଣ୍ଣ ସେବା କରିବାକୁ ମା', ଭଉଣୀ ବର୍ତ୍ତମାନ । କଟକରେ 'ସୁହାସିନୀ' କଲିକତାରେ 'ଅମିୟା' 'ଅଙ୍ଗୁରବାଳା'ର ସହରେ ପତ୍ନୀ ବିଚ୍ଛେଦର କଷ୍ଟ ସେ କଦାପି ଅନୁଭବ କରିନଥିଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୨୦୪)

ବେଶ୍ୟା ଅଙ୍ଗୁରବାଳାର ରୂପରେ ମୁଗ୍ଧ ହୋଇ ସେ ତାହାକୁ କଲିକତାରୁ କଟକ ନେଇ ଆସିଛନ୍ତି । ନଜର କରି ରଖିବାକୁ ଚେଷ୍ଟା କରିଛନ୍ତି । ପରିଶେଷରେ ଅଙ୍ଗୁରବାଳା ଜମିଦାର ଭବାକର ମିଶ୍ରଙ୍କର ବିପୁଳ ଧନ ଅପହରଣ କରି ଫେରାର ହୋଇଛି । ଭବାକର ମିଶ୍ର କୃତକର୍ମ ନିମିତ୍ତ ଅନୁତାପ କରିଛନ୍ତି । ସ୍ତ୍ରୀକୁ ନେଇ ଘର ସଂସାର କରିବାକୁ ସେ ଆଗ୍ରହୀ ହୋଇଛନ୍ତି । ସୀତାର ସଂସ୍ପର୍ଶରେ ଆସି ସେ ପରିବର୍ତ୍ତିତ ହୋଇଛନ୍ତି । ଏହି ଚରିତ୍ରରୁ ସମସ୍ତେ ସ୍ପନ୍ଦନ ଅନୁଭବ କରିଥାଏ । ଔପନ୍ୟାସିକାଙ୍କ ଲେଖନୀରେ ଉକ୍ତ ଚରିତ୍ରଟି ଯେତିକି ବାସ୍ତବ ସେତିକି ଜୀବନ୍ତ ରୂପ ଗ୍ରହଣ କରିଛି ।

## ଆଦର୍ଶ ପୁରୁଷ ଚରିତ୍ର :

ଔପନ୍ୟାସିକା କୁନ୍ତଳାକୁମାରୀଙ୍କ ଉପନ୍ୟାସରେ କେତୋଟି ଆଦର୍ଶ ପୁରୁଷ ଚରିତ୍ର ଦୃଷ୍ଟିଗୋଚର ହୁଅନ୍ତି । ଏମାନେ ସମସ୍ତେ ନୂତନତାର ବାର୍ତ୍ତାବହ । ସମାଜରେ ପ୍ରଚଳିତ ଥିବା କୁସଂସ୍କାର, ଅନ୍ଧବିଶ୍ୱାସ ଛୁଆଁ ଅଛୁଆଁ ଭେଦ, ଅନ୍ୟାୟ ଅତ୍ୟାଚାର ଇତ୍ୟାଦି ଦୂରକରି ଏକ ସୁସ୍ଥ ସୁନ୍ଦର ଜାତି ତଥା ସମାଜ ଗଠନ କରିବା ଏମାନଙ୍କର ଲକ୍ଷ୍ୟ । ଜାତିକୁ ପ୍ରଗତି ପଥରେ ଆଗେଇ ନେବା ଏମାନଙ୍କର ଧେୟ । ସୁତରାଂ ଏହି ଚରିତ୍ରଗୁଡ଼ିକ ଆଦର୍ଶମୁଖୀ । ସ୍ୱାମୀ ସଦାନନ୍ଦ, କୃଷ୍ଣଚନ୍ଦ୍ର ତ୍ରିପାଠୀ, ଚନ୍ଦ୍ରୋଦୟ, କୃଷ୍ଣଚନ୍ଦ୍ର ରାଉତରାୟ, ହରିହର ଶ୍ରେଷ୍ଠରାୟ, ଜଗନ୍ନାଥ ଭିଡ଼ିରାଜ, ତାରକ ଡାକ୍ତର, ଲଛମନଜୀ ପ୍ରଭୃତି ଏହି ଶ୍ରେଣୀର ଚରିତ୍ର ।

**ସ୍ୱାମୀ ସଦାନନ୍ଦ**—କୁନ୍ତଳାକୁମାରୀଙ୍କ 'କାଳିବୋହୂ' ଉପନ୍ୟାସର ସ୍ୱାମୀ ସଦାନନ୍ଦ ଏକ ଆଦର୍ଶ ଚରିତ୍ର । ସେ ଜଣେ ରାଜପୁତ୍ର । ସନ୍ନ୍ୟାସବ୍ରତ ଗ୍ରହଣକରି ଓଡ଼ିଶାର ହିତ ସାଧନ ନିମିତ୍ତ ସେ ମନପ୍ରାଣ ଢାଳି ଦେଇଥିଲେ । ଅଲେଖ ଧର୍ମବାଦୀ ସ୍ୱାମୀ ସଚ୍ଚିଦାନନ୍ଦ ତାଙ୍କର ଗୁରୁ ଥିଲେ । ତାଙ୍କର ଶିକ୍ଷାରେ ସଦାନନ୍ଦ ଦେଶ ଓ ଜାତିପାଇଁ ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ଜାତିର ଦୁର୍ଦ୍ଦଶାମୋଚନ ନିମିତ୍ତ ସେ ଆପ୍ରାଣ ଚେଷ୍ଟା କରିଥିଲେ ।

ପୁରୁଷ ପରି ନାରୀ ମଧ୍ୟ ସମାଜର ଏକ ବିଶିଷ୍ଟ ଅଙ୍ଗ । ନାରୀକୁ ତାର ନ୍ୟାଯ୍ୟ ଅଧିକାର ଦେବା, ସହକର୍ମିଣୀ ଓ ସହଧର୍ମିଣୀର ସମ୍ମାନ

ଦେବା ନିମିତ୍ତ ସେ ସର୍ବଦା କାର୍ଯ୍ୟ କରୁଥିଲେ । ନାରୀର ଉନ୍ନତିବିନା ସମାଜର ଅଗ୍ରଗତି ଅସମ୍ଭବ—ଏହା ସେ ଉତ୍ତମରୂପେ ହୃଦୟଙ୍ଗମ କରିପାରି-ଥିଲେ । ଔପନ୍ୟାସିକାଙ୍କ ମତରେ—"ଯେଉଁ ନାରୀଶକ୍ତି ଦିନେ ବିଶ୍ୱବାରା ଘୋଷାରୂପରେ ପବିତ୍ର ଋଗ୍‌ବେଦ ଗାନ କରିଥିଲା, ମୈତ୍ରେୟୀ ରୂପରେ ଦର୍ଶନର ସୂଗଭୀର ତତ୍ତ୍ୱ ହୃଦୟଙ୍ଗମ କରିଥିଲା, ସାବିତ୍ରୀ ରୂପରେ ମୃତ୍ୟୁଞ୍ଜୟୀ ହୋଇଥିଲା, ସୀତା ରୂପରେ ପୃଥିବୀ ଦ୍ୱିଧା କରିଥିଲା, ସେ ମହିଷାମର୍ଦ୍ଦିନୀ, ଚଣ୍ଡୀରୂପିଣୀ, ପ୍ରେମମୂର୍ତ୍ତି ରାଧାରୂପିଣୀ, ବିଦ୍ୟାରୂପିଣୀ ସରସ୍ୱତୀ, ଧନଧାନ୍ୟ ରୂପିଣୀ ଲକ୍ଷ୍ମୀ ତୁମ୍ଭର ତ ଜନନୀ, ଭଗିନୀ । ତୁମ୍ଭେ ତାଙ୍କୁ କାର୍ଯ୍ୟକ୍ଷେତ୍ରକୁ ଡାକ, ଦେଖିବ ପୁରୁଷ ଦେହରେ ପ୍ରାଣ ସଞ୍ଚାର ହେବ, କର୍ମ ଶକ୍ତି ପ୍ରକାଶ କରିବ । ସୁପ୍ତଭାରତ ପୁଣି ସିଂହ ବିକ୍ରମରେ ଉଠିବ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଭାଗ—ପୃ- ୧୦୩)

ସମାଜରେ ପ୍ରଚଳିତ ଥିବା ବାଲ୍ୟବିଧବା ପ୍ରଥାର ଉଚ୍ଛେଦ କରି ସମାଜକୁ ସଂସ୍କୃତ କରିବା ଔପନ୍ୟାସିକାଙ୍କର ମୁଖ୍ୟ ଲକ୍ଷ୍ୟ ଥିଲା । ତେଣୁ ସ୍ୱାମୀ ସଦାନନ୍ଦଙ୍କ ମୁଖରେ ସେ କହିଛନ୍ତି—"ମୋହର ଇଚ୍ଛା ବାଲ୍ୟ-ବିଧବାଙ୍କର ବିବାହ ହୁଅନ୍ତୁ, ବୟସ୍କା ବିଧବା ସମାଜର ସେବାକାର୍ଯ୍ୟ ଓ ଲୋକହିତକର କାର୍ଯ୍ୟ ଗ୍ରହଣ କରନ୍ତୁ; ଶିଶୁପାଳନର ଭାର ତାଙ୍କର ଉପରେ ପଡ଼ନ୍ତୁ, ଆଉ ବିବାହିତା ନାରୀମାନେ ସ୍ୱାମୀଙ୍କର ପ୍ରକୃତ ସହଧର୍ମିଣୀ ହେବା ପାଇଁ ଶିକ୍ଷାପ୍ରାପ୍ତ ହୁଅନ୍ତୁ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧ ୪) ।

ସଦାନନ୍ଦ ନିଜର ସ୍ୱପ୍ନକୁ ସାର୍ଥକ କରିବା ନିମିତ୍ତ 'ଶାନ୍ତିକୁଟୀର' ଆଶ୍ରମ ସ୍ଥାପନ କରିଥିଲେ । ଏହି ଆଶ୍ରମରେ ଅନାଥ ଓ ଗୃହତ୍ୟାଗିନୀ କେତେକ ବିଧବା ଆଶ୍ରୟ ଗ୍ରହଣ କରିଥିଲେ । ଆଶ୍ରମରୁ ବିଦ୍ୟା ଓ ଶିଳ୍ପ ଶିକ୍ଷାର ସୁବିଧା ସେମାନେ ଲାଭ କରିଥିଲେ । ପାଞ୍ଚବର୍ଷଠାରୁ ଚଉଦ ବର୍ଷ ବୟସ୍କା ବାଳିକାମାନେ ଭାରତୀୟ ପ୍ରଣାଳୀରେ ବିଦ୍ୟା ଓ ଶିଳ୍ପ ଶିକ୍ଷା କରୁଥିଲେ; ସିଲେଇ ସୂତା ଓ ଉଲ୍ କାମ, ସୂତାକଟା, କାଇଁଚ ଓ ବାଉଁଶରେ ପାଚିଆଠାରୁ ଆରମ୍ଭ କରି ସବୁପ୍ରକାର ଭଲ ଭଲ ପଦାର୍ଥ ତିଆରି, ବଢ଼େଇ ଓ କମାର କାମ, ଶିଙ୍ଗକାମ, ବାଡ଼ବଗିଚା କାମ, ରୋଷେଇ କାମ ଇତ୍ୟାଦି ଯାହା ସ୍ତ୍ରୀଲୋକଙ୍କ କାର୍ଯ୍ୟ ତାହା ଏହି

ଆଶ୍ରମରେ ଶିକ୍ଷା ଦିଆଯାଉ ଥିଲା । ଯାହା ଫଳରେ କି ଭବିଷ୍ୟତରେ ଏହି ବାଳିକାମାନେ ସୁଗୃହିଣୀ ଓ ସୁମାତା ହୋଇ ଆପଣା ଗୃହକୁ ଉଜ୍ଜ୍ୱଳ କରିପାରୁ ଥିଲେ ।

ସେହିପରି ଆଧୁନିକ ଶିକ୍ଷାପ୍ରାପ୍ତ କୃଷ୍ଣଚନ୍ଦ୍ର ଓ ଚନ୍ଦ୍ରୋଦୟ ସ୍ୱାମୀ ସଦାନନ୍ଦଙ୍କୁ ସମାଜ ସେବାରେ ସାହାଯ୍ୟ କରିଛନ୍ତି । ଚନ୍ଦ୍ରୋଦୟ ବାଲ୍ୟ-ବିଧବା ଲକ୍ଷ୍ମୀକୁ ବିବାହ କରି ସମାଜର ଆଦର୍ଶ ହୋଇଛନ୍ତି । ସ୍ୱାମୀ ସଦାନନ୍ଦଙ୍କ ମୃତ୍ୟୁ ପରେ ତାଙ୍କର ଅଭିଳାଷ ପୂରଣ ଦିଗରେ ଏମାନେ କାର୍ଯ୍ୟ କରି ଅଛନ୍ତି ।

**ଜମିଦାର କୃଷ୍ଣଚନ୍ଦ୍ର**—'ନଅଭୁଣ୍ଡୀ' ଉପନ୍ୟାସର ଜମିଦାର କୃଷ୍ଣଚନ୍ଦ୍ର ରାଜତରାପୁ ଜଣେ ସଂସ୍କାରକାମୀ ଚରିତ୍ର । ପାରମ୍ପରିକ ଜମିଦାର-ମାନଙ୍କ ପରି ସେ ପ୍ରଜାଶୋଷକ ନୁହଁନ୍ତି । ମହାତ୍ମାଗାନ୍ଧୀଙ୍କ ସ୍ୱଦେଶୀ ଆନ୍ଦୋଳନରେ ପ୍ରଭାବିତ ହୋଇ ସେ ବିଦେଶୀ ବର୍ଜନ ମନ୍ତ୍ର ପ୍ରଚାର କରିଅଛନ୍ତି । ନୂଆ ଜମିଦାର, ଲୋକେ ଭାବିଥିଲେ କୋଟ ପେଣ୍ଟଲୁନ୍ ପିନ୍ଧି ମୁଣ୍ଡରେ ଟଳମଟା ଗୋଲ ହୋଇଥିବେ ପରା । ଶୁଣିଥିଲେ ଭାରି ପଢ଼ାଲା ଲୋକ; କିନ୍ତୁ ଦେଖିଲା ବେଳକୁ ଜମିଦାର ପିନ୍ଧିଛନ୍ତି ଖଣ୍ଡେ ଖଦି, ସେ ପୁଣି ଆଣ୍ଠୁ ଲୁଚିବାକୁ ନାହିଁ, ଦେହରେ ଗୋଟିଏ ମୋଟିଆ ଗୁଦଡ଼ି । ଗୋଡ଼ରେ ପୁଣି ଭୋଟ ଅମଳର ଚଟି । ହାତରେ ସୁନା ମୁଦିଟି ଜକ୍‌ଜକ୍ ଦିଶୁଥାଏ ଏକା । କିନ୍ତୁ ଯେତେହେଲେ ହାକିମ । ଲୋକେ ଲମ୍ବ ଲମ୍ବ ଗୋଡ଼ତଳେ ପଡ଼ିଲେ । ସଲାମୀ ଭେଟି ଥୋଇଲେ । ହେଲେ ଜମିଦାର କିଛି ଛୁଇଁଲେ ନାହିଁ । ସବୁ ଜିନିଷ ଫେରେଇ ଦେଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୪୭) ।

ଜମିଦାର କୃଷ୍ଣଚନ୍ଦ୍ର ଜାତିର ପିତା ମହାତ୍ମାଗାନ୍ଧୀଙ୍କ ବଳିଷ୍ଠ ଆଦର୍ଶରେ ନିଜେ କେବଳ ଅନୁପ୍ରାଣିତ ହୋଇ ନାହାନ୍ତି; ସଭା ସମିତି କରି ନିଜ ପ୍ରଜାମାନଙ୍କୁ ସ୍ୱଦେଶୀ ମନ୍ତ୍ରରେ ପରିଚାଳିତ ହେବା ନିମିତ୍ତ ଉଦ୍‌ବୋଧନ ଦେଇଛନ୍ତି—"ଧର ଗୋଟିଏ କଥା, ଆମେ ହେଲୁ ଓଡ଼ିଆ ପଖାଳଖିଆ, ଆମର ବାପା ଜେଜେବାପା ଅମଳର ଲୋକେ କିଣି ମୋଟଖାଇ ମୋଟ ପିନ୍ଧି ସୁଖରେ ସଂସାର କରୁନଥିଲେ, ସେତେବେଳେ ଟଙ୍କାକୁ ପଚିଶ

ସେର ଗୁଡ଼ଜଳ ମିଳୁଥିଲା । ଟଙ୍କାକୁ ଘିଅ ତିନିସେର । ଏବକାଳକୁ ଟଙ୍କାକୁ ସରୁଗୁଡ଼ଜଳ ଏଗୁରସେର ମିଳିବା କଷ୍ଟ । କାହିଁ ଇମିତି ହେଲା ? ଆମ ଦେଶରେ କ'ଣ ଧାନ ଫସଲ ହେଉନାହିଁ ନା ଗଛରେ କପା ଫଳୁନାହିଁ ? ଆମ ପୋଖରୀରେ କ'ଣ ମାଛ ନାହିଁ ? ଅଛି ସବୁ । ହେଲେ ଆମ ଆଖିଟା ହେଲାଣି ଦୁସୁରା । ଆମେ ହେଲୁଣି ବାବୁ ଆଉ ଅଳସୁଆ । ଆମ ଦେଶରେ କୋଟିଏ ଲୋକ ଯଦି ବାବୁଆନା ଛାଡ଼ନ୍ତେ, କହନ୍ତେ ନା ଆମେ ହାତେ ଅରକ ଖାଇମୁଁ, ହାତେ ଲୁଗା ବୁଣିବୁ, ହାତେ ପିନ୍ଧିବୁ, ଆମେ ଆଉ ପର ଦୁଆରକୁ ଚାହିଁବୁ ନାହିଁ, ଆମେ ଆମ ଭିତରେ କଜିଆଗୋଳ କରିବୁନି । ଗାଈ ହେଲେ ଗୋମାତା, ତାଙ୍କ ଦୁଧଖାଇ ଆମେ ପିଲାଦିନେ ବଢ଼ିଛେଁ । ତାଙ୍କୁ ଯତନରେ ପାଳିବୁଁ, ତେବେ କ'ଣ ଘିଅ ଦୁଧରେ ଘର ଭାସନ୍ତା ନାହିଁ । ନିତି ନା ଶହେଟା ଗୋରୁ ହଣା ହେଉଛନ୍ତି । ଆଉ ପଠାଣଙ୍କ ଇଦ୍‌ରେ ତାଙ୍କ ଧରମ ପରବରେ ଗୋଟିଏ ଯୋଡ଼ିଏ ଗୋରୁ କୋରବାଣୀ ହେଲେ ହିନ୍ଦୁଙ୍କ ଅଷ୍ଟାଙ୍ଗ ଜଳିଉଠୁଛି, ଆଉ ନିଜେ କଂସେଇକୁ ଗାଈ ବିକି ଦେଲାବେଳକୁ ଗୋହତ୍ୟା ପାପଟା ଲାଗିପାଉ ନାହିଁ ପରା । ହେଇ ଦେଖ ଏଇ ଯୋଉ ହାଡ଼ି, ପାଣ, ମୋଚି, ଚମାରକୁ ଆମେ ଶ୍ରେଷ୍ଠ ଜାତି କହୁଛେଁ, ତାଙ୍କୁ ଖାଲି ଛୁଇଁଦେଲେ ମାଗ ହୋଇ ଯାଉଛେଁ, ଭାବିଲା ବେଳକୁ ତାଙ୍କ କାମଟା କଏ ଭୁଲନ୍ତା ? ସେମାନେ ତାଙ୍କ କାମ ନକଲେ ତ ଆମ ସଂସାର ଚଳନ୍ତା ନାହିଁ । ଆମର ଏଡ଼େ ଉପକାରୀ ମଣିଷଙ୍କୁ ଆମେ 'ଜାତି ପାଟକରୁ ଅଲଗା ରଖି ଛୁଆଁ ଅଛୁଆଁ ରଙ୍ଗ ଛାଡ଼ିଲେ ହବ । ଏଇଟା ବଧାତା ସହିବଟି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୪୭) ।

ଜମିଦାର କୃଷ୍ଣଚନ୍ଦ୍ରଙ୍କ ଚେଷ୍ଟାରେ ଆଖଡ଼ାଘରୁ ହଣାପାଣି ଉଠିଛି । ଗାଁରେ ଭାଗବତ ଘର ବସିଛି । ସଂକୀର୍ତ୍ତନ ହୋଇଛି । ଘରେ ଘରେ ଅରଟ ବୁଲିଛି । ଗାଁରେ ଗଣ୍ଡଗୋଳର ଶବ୍ଦ ଶୁଭୁନାହିଁ । ଲୋକେ ପର ଚର୍ଚ୍ଚା ଛାଡ଼ି ନିଜ ନିଜ କାର୍ଯ୍ୟରେ ମନଯୋଗ ଦେଇଛନ୍ତି । ଜମିଦାର କୃଷ୍ଣଚନ୍ଦ୍ର ହୋଇଛନ୍ତି ପ୍ରଜାମାନଙ୍କର ଆଦର୍ଶ ।

**ଜଗନ୍ନାଥ କବିରାଜ** :—'ରଘୁଅରକ୍ଷିତ' ଉପନ୍ୟାସର ଜଗନ୍ନାଥ କବିରାଜ ଏକ ଆଦର୍ଶ ଚରିତ୍ର । କବିରାଜ ସେ । ରୋଗୀ ସେବାକୁ

ସେ ଜୀବନର ବ୍ରତ ରୂପେ ଗ୍ରହଣ କରିଥିଲେ । ଗଡ଼ଧନ ଅନାଦ୍ରା ଉତ୍ତ ଶୋକଶୋଷ ଭୁଲି ସେ ରୋଗୀଙ୍କୁ ଶକଣ୍ଠ କରନ୍ତି । ଅସହାୟ ଦୁଃଖୀ ଦରିଦ୍ର ଲୋକଙ୍କର ସହାୟ ହୁଅନ୍ତି । ଦବଗଜେ ଦୟାର ସାଗର, ଗରିବର ବାପ, ମା' । ଲୋକଙ୍କ ଚକ୍ଷୁରେ ସେ ଦେବତା ତୁଲ୍ୟ । "ହଠାତ୍ ଦାଣ୍ଡଦ୍ୱାର ଠେଲି ଭିତରେ ପଶିଗଲା ଶତ୍ରୁଘ୍ନ, ଲମ୍ବହୋଇ କବିରାଜଙ୍କ ଗୋଡ଼ତଳେ ପଡ଼ିଗଲା । ତାହାର ମୁହଁରୁ ଅନେକକ୍ଷଣ କିଛିମାତ୍ର କଥା ବାହାରିଲା ନାହିଁ; ପରେ ଅତି କଷ୍ଟରେ କ୍ଷୀଣ କଣ୍ଠରେ କହିଲା—"କବିରାଜେ, ମା, ବାପ, ରକ୍ଷାକର, ଜୀବନ ଦିଅ । ଏତେ ତ କରିଚ, ସେ ପଗ ମୋର ଗୋଟିଏ ହଙ୍ଗାମ । × × × ଭିତରୁ ସ୍ତ୍ରୀକଣ୍ଠରେ ଜଣେ କହିଲା —"କବିରାଜେ, ପାହାନ୍ତାରୁ ଆସି ବସିଚ ଗରିବ ଘରେ, ତମର ଏତେ ଦୟା କାହିଁ ଶୁଝିବୁଁ, ଆମେ ନିସ୍ୱମଃଖୀ ଲୋକ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୮୪) କବିରାଜେ କେବଳ ଦରିଦ୍ର ବ୍ୟକ୍ତିଙ୍କୁ ସାହାଯ୍ୟ କରିନାହାନ୍ତି । ପରମ୍ପରାପ୍ରିୟ ଅର୍ଥଲୋଭୀ କୃପଣ ଲୋକକୁ ସତ୍‌ପଥ ପ୍ରଦର୍ଶନ କରିବାକୁ ସେ ଆଗେଇ ଯାଇଛନ୍ତି । ଅନାଥକୁ ପୁତ୍ରବତ୍ ପାଳନ କରିଅଛନ୍ତି ।

**ତାରକ ସେନ୍** :—'ରଘୁଅରକ୍ଷିତ' ଉପନ୍ୟାସର ତାରକ ଡାକ୍ତର ଜଣେ ଦେଶପ୍ରେମୀ ଆଦର୍ଶ ଖ୍ରୀଷ୍ଟିଆନ୍ । ମଣିଷକୁ ସେ ଭଲ ପାଇଛନ୍ତି । ତାଙ୍କ ମତରେ—ମଣିଷ ପରିସ୍ଥିତିରେ ପଡ଼ି ଭୁଲ କରେ । ସତ୍‌ସଙ୍ଗ ଲାଭକଲେ ସେ ପୁଣି ସତ୍‌ପଥକୁ ଫେରିଆସେ । ସେଥିପାଇଁ ପତିତା ନାରୀକୁ ବିବାହ କରିବାକୁ ସେ ଡିଳେହେଲେ କୁଣ୍ଠାବୋଧ କରି ନାହାନ୍ତି । ବରଂ ସେ କହିଛନ୍ତି—"ମଣିଷ କି ଘୃଣିତ ହୋଇପାରେ ? ଏହି ମଣିଷ ପାଇଁ ପ୍ରଭୁ ପ୍ରାଣ ଦେଇଛନ୍ତି । ପ୍ରଭୁ ଯୀଶୁ ଯେତେବେଳେ ପାପୀକୁ ଘୃଣା କରିନାହାନ୍ତି, ମୁଁ କପରି ଘୃଣା କରିବ ? ମଣିଷ କିଛି କାଠପଥର ନୁହେଁ, ମଣିଷ ସୁବର୍ଣ୍ଣ, ନିଆଁରେ ଯେତେ ପୋଡ଼ିଥାଏ, ତାହାର ଖାଦ ସେତିକି ନଷ୍ଟ ହୁଏ । ପ୍ରଭୁ ତମକୁ ଆପଣା ଗୁହାଳକୁ ଡାକୁଛନ୍ତି, ମୁଁ ତୁମକୁ କପରି ଦୂର କରିବ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ — ପୃ-୩୧୦) ।

ଡାକ୍ତର ସେନ୍ ପରୋପକାରୀ । ଆମୋଦ ପ୍ରମୋଦ କ'ଣ ସେ ଜାଣନ୍ତି ନାହିଁ । ରୋଗୀ ସେବାରେ ହିଁ ସେ ପରମ ତୃପ୍ତି ଲାଭ କରନ୍ତି ।

ଲକ୍ଷ୍ମୀମଣି :—'ରଘୁଅରକ୍ଷିତ' ଉପନ୍ୟାସର ଲକ୍ଷ୍ମୀମଣି ସଂସାରୀ ହୋଇ ବ୍ରହ୍ମଚାରୀ ସାଜିଛି । ଦେଶମାତୃକା ପାଇଁ ହସି ହସି ପ୍ରାଣବଳି ଦେବା ପାଇଁ ସେ ଆଗେଇ ଯାଇଛି । "ମୁଁ ଜଣକୁ ଭଲପାଏ, ତା' ଲାଗି ମୁଁ ସବୁ ତ୍ୟାଗ କରିଛି, ଆବଶ୍ୟକ ହେଲେ ଏ ପ୍ରାଣ ମଧ୍ୟ ଦେବି । ତା' ଲାଗି ମୁଁ ବେତମାଡ଼ ସହିଛି, ଜେଲଖାନା ଯାଇଛି, ସମାଜଚ୍ୟୁତ ହୋଇଛି, ସଂସାର ତ୍ୟାଗ କରିଛି । ସେ ଜଣକ କିଏ ଜାଣ ! ସେ ମୋର ଦେଶମାତା, ମୋର ଇଷ୍ଟଦେବୀ । ତାଙ୍କୁ ମୁଁ ନିର୍ଜୀବ ମୃତ୍ତିକା ମନେକରେ ନାହିଁ, ସେ ମୋର ଜୀବନ୍ତ ଦେବୀ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ— ପୃ-୩୫୫) ।

ମାତୃଭୂମିର ଦୁଃଖ ଦୁର୍ଦ୍ଦଶା ମୋଚନ କରିବା ନିମିତ୍ତ ସେ ଉଦ୍‌ଗ୍ରୀବ ହୋଇ ଉଠିଛି । ଆଲୁମାରୀ ସ୍ୱାମୀଙ୍କୁ ନିଜର କର୍ମଭୂଇଁ କରି ନିଷ୍କାମ ଭାରତର କର୍ମୀ ଭାବେ ସେ କାର୍ଯ୍ୟ କରିଛି ।

ପାରମ୍ପରିକ ସମାଜରେ କାୟା ବିସ୍ତାର କରିଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସର ମୂଳୋତ୍ପାଟନ କରି ଏକ ସୁସ୍ଥ ସମାଜ ଗଠନ କରିବା କୁନ୍ତଳାକୁମାରୀଙ୍କ ଉଦ୍ଦେଶ୍ୟ ଥିଲା । ତେଣୁ ସାମାଜିକ ଜୀବନର ଦୋଷ ଦୁର୍ବଳତାକୁ ରୂପାୟନ କରି ସେ ସନ୍ତୁଷ୍ଟ ହୋଇପାରି ନାହାନ୍ତି, ବରଂ ଏହି ସମସ୍ୟାଗୁଡ଼ିକର ସମାଧାନ ପାଇଁ ସେ ଚିନ୍ତା ନିର୍ଦ୍ଧାରଣ କରିଛନ୍ତି । କେତେଗୁଡ଼ିଏ ଆଦର୍ଶ-ଚରିତ୍ର ସୃଷ୍ଟି କରି ସେ ନିଜର ସଂସ୍କାରୀ ମନୋବୃତ୍ତିର ପରିଚୟ ଦେଇଛନ୍ତି ।

## ଗୌଣ ଚରିତ୍ର :

ଭିକ୍ଟୋରିଆନ ଯୁଗରେ ଉପନ୍ୟାସରେ ଚରିତ୍ର ଚିତ୍ରଣ ପ୍ରତି ଅଧିକ ଗୁରୁତ୍ୱ ପ୍ରଦାନ କରାଯାଉଥିଲା । ମୁଖ୍ୟ ହେଉ ବା ଗୌଣ ହେଉ, ସେ କୌଣସି ଚରିତ୍ର ସ୍ରଷ୍ଟାର ଲେଖନୀରେ ବଳିଷ୍ଠ ରୂପରେଖ ପାଉଥିଲା । ସେହି ଯୁଗର ଶିଳ୍ପୀ ଫକୀରମୋହନଙ୍କ କଥାସାହିତ୍ୟରେ ପ୍ରଧାନ ଓ ଅପ୍ରଧାନ ସମେତ ଅନେକ ଚରିତ୍ରର ସମାବେଶ ଘଟିଛି । ତାଙ୍କ କଥା-ସାହିତ୍ୟରେ ମୁଖ୍ୟ ଚରିତ୍ର ଅପେକ୍ଷା ଗୌଣ ଚରିତ୍ର ଚିତ୍ରଣ ପ୍ରତି ସ୍ରଷ୍ଟାପ୍ରାଣ ଅଧିକ ସଚେତନ ଥିବା ପରିଲକ୍ଷିତ ହୁଏ । ମୁଖ୍ୟ ଘଟଣା ସହିତ ସଂପୃକ୍ତ ହୋଇ ନଥିବା କେତେକ ଚରିତ୍ରର ଉପସ୍ଥାପନା ଏତେ ଜୀବନ୍ତ ଓ ବଳିଷ୍ଠ

ଯେ ହେଗୁଡ଼ିକୁ ଉପନ୍ୟାସରୁ ବାଦଦେଲେ ଘଟଣା ପ୍ରବାହରେ ହୁଏତ କିଛି ତ୍ରୁଟି ହେବନାହିଁ, ମାତ୍ର ଉପନ୍ୟାସର ବ୍ୟାପକ ସଫଳତାରେ ନିଶ୍ଚିତ ରୂପେ ବ୍ୟାଘାତ ଘଟିବ, ଏଥିରେ ସନ୍ଦେହ ନାହିଁ । ଫକୀରମୋହନଙ୍କ କଥା ସାହିତ୍ୟରେ ଏହି ଗୌଣ ଚରିତ୍ରଗୁଡ଼ିକ ନିଜ ନିଜର ବୈଶିଷ୍ଟ୍ୟ ଯୋଗୁ ଅତୀବ ମନୋଜ୍ଞ ଓ ପ୍ରାଣବନ୍ତ ।

ଓଡ଼ିଆ ସାହିତ୍ୟରେ ଫକୀରମୋହନଙ୍କ ପରେ ଔପନ୍ୟାସିକା କୁନ୍ତଳାକୁମାରୀଙ୍କ ଉପନ୍ୟାସରେ ଏହିପରି କେତେଗୁଡ଼ିଏ ଗୌଣ ଚରିତ୍ର ଦୃଷ୍ଟିଗୋଚର ହୁଅନ୍ତି । ଏମାନଙ୍କ ମଧ୍ୟରୁ କେତେକଙ୍କୁ ବାଦଦେଲେ ଉପନ୍ୟାସର କୌଣସି କ୍ଷତି ହେବ ନାହିଁ—ଯେପରି 'ରଘୁଅରକ୍ଷିତ' ଉପନ୍ୟାସର ତାରକ ସେନ୍, ଫୁଲମଞ୍ଜରୀ, ଅବଦୁଲ ଅଜିଜ୍ ପ୍ରଭୃତି ଚରିତ୍ର । ଔପନ୍ୟାସିକା ନିଜ ମତବାଦର ପ୍ରଚାର ନିମିତ୍ତ ହୁଏତ ଏହି ଚରିତ୍ରଗୁଡ଼ିକ ସୃଷ୍ଟି କରିଅଛନ୍ତି । ହିନ୍ଦୁ ମୁସଲମାନ ମଧ୍ୟରେ ଥିବା ସାଂପ୍ରଦାୟିକ ସମସ୍ୟା ବିଷୟରେ ବା ଖ୍ରୀଷ୍ଟଧର୍ମର ମହତ୍ତ୍ୱ ପ୍ରଚାର ଢଙ୍ଗରେ ଏହି ଚରିତ୍ରଗୁଡ଼ିକ ବିଶେଷ ସହାୟତା କରିଥିବା ଜଣାଯାଏ । ମାତ୍ର 'ରଘୁ-ଅରକ୍ଷିତ' ଉପନ୍ୟାସର ପିତେଇନାନୀ, ନିଳିଆ, ଜେମା; 'ଭ୍ରାନ୍ତି' ଉପନ୍ୟାସର ମ.ଳତୀ, ସାନନ୍ଦ; 'ପରଶମଣି' ଉପନ୍ୟାସର ବୃନ୍ଦାବନ 'ନଅଭଉଣୀ' ଉପନ୍ୟାସର ଗେଲ୍ହେଇ ଆଦି ଗୌଣ ଚରିତ୍ର ଔପନ୍ୟାସିକାଙ୍କର ଏକ ଏକ ସାର୍ଥକ ସୃଷ୍ଟି । ଏହି ଚରିତ୍ରଗୁଡ଼ିକ ସାଧାରଣତଃ ସରଳ (Flat) ଓ ଟାଇପ୍ ଚରିତ୍ର । ନିଜର ଅନୁଭୂତି ଓ ଚିତ୍ରଣ କୌଶଳ ଦ୍ୱାରା ସ୍ୱ କୁନ୍ତଳାକୁମାରୀ ଏହି ଚରିତ୍ରଗୁଡ଼ିକୁ ଜୀବନ୍ତ ଭାବେ ଉପସ୍ଥାପନା କରିଛନ୍ତି । ମନେହୁଏ ପିତେଇନାନୀ ବାହାରର କୌଣସି ଚରିତ୍ର ନୁହେଁ । ସେ ଆମରି ସମାଜରେ ବାସ କରୁଥିବା ଆମରି ମା' ମାଉସୀ ଭିତରୁ ଜଣେ ବୁଢ଼ୀ, ଯିଏ ଆମରି ଦୁଃଖରେ ଦୁଃଖୀ ହୋଇ ନୟନରୁ ଅଶ୍ରୁ ଢାଳେ । ମାଳତୀ ଓ ଜେମାପରି କୁଟନୀ ଧୂର୍ତ୍ତା ଚତୁର ନାରୀ ଆଜି ମଧ୍ୟ ସମାଜରେ ଦେଖାଯାନ୍ତି । ସେମାନଙ୍କ ଚକ୍ରାନ୍ତରେ ସୁନାର ଘର ଚୂନା ହୁଏ । ବିଶ୍ୱାସରେ ବିଷଦେଇ ମଣିଷର ଜୀବନ ନାଶ କରିବାକୁ ଏମାନେ ଭଲେ ହେଲେ କୁଣ୍ଠାବୋଧ କରନ୍ତି ନାହିଁ । ଏହି ସ୍ୱାର୍ଥାନ୍ୱେଷୀ ଗୋଷ୍ଠୀ ସୁସ୍ଥ ସମାଜ ଜୀବନକୁ ବିପର୍ଯ୍ୟସ୍ତ କରି ଏମାନଙ୍କ ସୁବିଧା ହାସଲ କରନ୍ତି । ଏମାନେ ସମାଜର ଏକ ଏକ ଆତଙ୍କ, ଘୋର ଅନିଷ୍ଟକାରୀ କୀଟ ।

ସେହିପରି ଚେଣ୍ଡ୍ରେଇ ଗାଁ ଗହଳର ଏକ ଦୁଷ୍ଟା ନାରୀ । କଣ୍ଟାବାଡରେ ଲୁଗାପକାଇ ସେ କଜିଆ କରେ । ଗାଁ ସ୍ତ୍ରୀ ଲୋକଙ୍କ ମଧ୍ୟରେ କଳି ଲଗାଇ ଆନନ୍ଦ ପାଏ । ପରଘର ଭାଙ୍ଗିବାରେ ସେ ଯେପରି ଧୁରନ୍ଧର, ଉପରେ ପଡ଼ି ଉପକାର କରିବାରେ ସେହିପରି କରିତ୍କର୍ମା, ନିଜ ପୂର୍ବପୁରୁଷର କୀର୍ତ୍ତି କାହାଣୀ ହିଁ ତାର ସର୍ବସ୍ୱ । ସେଥିରେ ସେ ଗର୍ବ ଅନୁଭବ କରେ । ଅପାର ଆନନ୍ଦ ପାଏ । ଓଡ଼ିଶାର ଗାଁ ଗହଳରେ ଏଭଳି ନାରୀ ବିରଳ ନୁହେଁ ।

ଏହି ପରିପ୍ରେକ୍ଷୀରେ ସାନଦ, ନରିଆ ଓ ଜଗନ୍ନାଥ କବିରାଜ ପ୍ରଭୃତି ଚରିତ୍ରଙ୍କୁ ବିସ୍ତୃତ ଆଲୋଚନା କରାଯାଇପାରେ । ଏମାନଙ୍କଠାରେ ଯଥେଷ୍ଟ ସ୍ୱାଭାବିକତା ଲକ୍ଷ୍ୟ କରାଯାଇଥାଏ । ସ୍ରଷ୍ଟାପ୍ରାଣର ଅନୁଭୂତି ଓ ଚମତ୍କାର ଚିତ୍ରଣ କୌଶଳ ଲାଭକରି ଏହି ଚରିତ୍ରଗୁଡିକ କାଳଜୟୀ ହୋଇ ପାରିଛନ୍ତି । ଔପନ୍ୟାସିକା ତାଙ୍କର ଉପନ୍ୟାସଗୁଡ଼ିକରେ ସାମାଜିକ ଚିତ୍ର ଓ ସମସ୍ୟା ଅପେକ୍ଷା ଚରିତ୍ରମାନଙ୍କ ଉପରେ ଅଧିକ ଗୁରୁତ୍ୱ ପ୍ରଦାନ କରିଥିବା ଜଣାଯାଏ । ସେହି ସେହି ଚରିତ୍ରମାନଙ୍କର ରୂପାୟନ ମଧ୍ୟ ଦେଇ ସମାଜର ବହିଃରଙ୍ଗ ଓ ଅନ୍ତଃରଙ୍ଗ ପ୍ରକୃତି ଫୁଟି ଉଠିଛି । ମୁଖ୍ୟ ଚରିତ୍ର ଉପରେ ସେ ଯେପରି ଗୁରୁତ୍ୱ ଆରୋପ କରିଛନ୍ତି ସେହିପରି ମଧ୍ୟ ସେ ଗୌଣ ଚରିତ୍ରକୁ ଅବହେଳା କରିନାହାନ୍ତି । ସବୁ ଚରିତ୍ର ସ୍ରଷ୍ଟାର ବ୍ୟକ୍ତିବୃତ୍ତିରୁ ଜନ୍ମ ନେଇ ସମାଜରେ ଜୀବନ୍ତ ରୂପେ ପ୍ରତିଭାତ ହୋଇଛନ୍ତି । ତେଣୁ କୁନ୍ତଳାଙ୍କ ଉପନ୍ୟାସରୁ ସାମାଜିକ ସ୍ଥିତିରୁ ଚରିତ୍ରମାନଙ୍କୁ ଅଥବା ଚରିତ୍ରମାନଙ୍କଠାରୁ ସାମାଜିକ ସ୍ଥିତିକୁ ଅଲଗାକରି ବିଚାର ହୁଏ ନାହିଁ । ସମାଜ ଓ ଚରିତ୍ର ସବୁ ଯେପରି ମିଳିଯାଇ ଏକ ମାନବିକ ରସବୋଧ ଏବଂ ଭାବବୋଧ ସୃଷ୍ଟି କରିଛି ।

## ସମାଜ ଚିତ୍ର :

ସାହିତ୍ୟ ସହିତ ମଣିଷ ଜୀବନର ଘନିଷ୍ଠ ସମ୍ପର୍କ ମାନବର ସୃଷ୍ଟି ସମୟରୁ ହିଁ ପ୍ରତିଷ୍ଠିତ । ତେଣୁ ସାହିତ୍ୟ କେବଳ କଳ୍ପନାର ବସ୍ତୁ ନୁହେଁ; ଅଧିକନ୍ତୁ ଏହା ମଣିଷ ଜୀବନ ଓ ସମାଜର କଳାତ୍ମକ ଅଭିବ୍ୟକ୍ତି ମାତ୍ର । ସ୍ରଷ୍ଟା ତା ବ୍ୟକ୍ତିଗତ ଜୀବନର ବିପୁଳ ଅଭିଜ୍ଞତା ଓ ସମସାମୟିକ ସମାଜର ଚିତ୍ରକୁ ଉପଜୀବ୍ୟ କରି ସୃଷ୍ଟି କରେ ସ୍ୱରସ ସୁନ୍ଦର ରସବୋଧ ସାହିତ୍ୟ ।

ସୁତରାଂ ମଣିଷ ଜୀବନର ନିତ୍ୟ ନୈମିତ୍ତିକ ଘଟଣା ସହିତ ସମାଜର ଘାତପ୍ରତିଘାତ ଚାଲିଚଳଣି, ଆଚାର ବ୍ୟବହାର ଆଦି ସ୍ରଷ୍ଟାର ଲେଖନୀରେ ଜୀବନ୍ତ ରୂପ ଗ୍ରହଣ କରେ । ଏତଦ୍‌ବ୍ୟତୀତ ସାହିତ୍ୟ ହେଉଛି ଯୁଗାଶ୍ରୟୀ । ଏକ ନିର୍ଦ୍ଦିଷ୍ଟ ଯୁଗରେ ଦେଖା ଦେଇଥିବା କୌଣସି ଜାତିର ରାଜନୈତିକ, ସାଂସ୍କୃତିକ, ଧାର୍ମିକ ଓ ଆଧ୍ୟାତ୍ମିକ ଚିନ୍ତାଧାରା ଆଦି ସେହି ଜାତିର ସାହିତ୍ୟରେ ରୂପାୟିତ ହୋଇଥାଏ । ତେଣୁ କୌଣସି ଜାତିର ସାହିତ୍ୟ ଅଧ୍ୟୟନରୁ ସେପରି ସେହି ଜାତିର ସାମାଜିକ, ରାଜନୈତିକ, ଅର୍ଥନୈତିକ, ସାଂସ୍କୃତିକ, ଆଧ୍ୟାତ୍ମିକ ଚିନ୍ତା ତଥା ଚେତନାର ସୂଚନା ମିଳିଥାଏ । ଅନୁରୂପ ଭାବରେ ସେହି ଜାତିର ସାହିତ୍ୟ ମୂଲ୍ୟାୟନ ବେଳେ ଉପର୍ଯ୍ୟୁକ୍ତ ଦିଗଗୁଡ଼ିକ ଏକାନ୍ତ ଅବଲମ୍ବନୀୟ ହୋଇପଡ଼େ ।

ସାହିତ୍ୟ ଓ ସମାଜ ଅଙ୍ଗାଙ୍ଗୀଭାବେ ଜଡ଼ିତ । ସାହିତ୍ୟ ମଣିଷ ଜୀବନ ଓ ସମାଜରୁ ସୃଷ୍ଟି । ପୁନଶ୍ଚ ମଣିଷ ଜୀବନ ଓ ସମାଜ ସାହିତ୍ୟଦ୍ୱାରା ପ୍ରଭାବିତ । ଏ ଉଭୟେ ଉଭୟଙ୍କ ବିକାଶ ଓ ପ୍ରକାଶର ପ୍ରକୃଷ୍ଟ ମାଧ୍ୟମ ।

ଆଧୁନିକ ଯୁଗରେ ଓଡ଼ିଆ କଥାସାହିତ୍ୟରେ ଫକୀରମୋହନ ହେଉଛନ୍ତି ପ୍ରଥମ ସାମାଜିକ କଥାକାର । ସମାଜର ସୁଖ-ଦୁଃଖ, ହସ-କାନ୍ଦ, ଆଚାର ବ୍ୟବହାର, ରୀତି-ନୀତି ଓ ପର୍ବପର୍ବାଣୀର ନିଛକ ଚିତ୍ର ସେ ତାଙ୍କ କଥାସାହିତ୍ୟରେ ପରିବେଷଣ କରିଛନ୍ତି । ସୁତରାଂ ତାଙ୍କ ଉପନ୍ୟାସ ସମୂହ ପାଠକ-ସମାଜରେ ବେଶ ଆଦୃତ ହୋଇଛି । ଫକୀରମୋହନଙ୍କ ଉପନ୍ୟାସପରେ କୁନ୍ତଳାକୁମାରୀଙ୍କ ଉପନ୍ୟାସର ଅନେକ ସ୍ଥାନରେ ସମାଜ ଜୀବନର ଜୀବନ୍ତ ଚିତ୍ର ପ୍ରକଟିତ ହୋଇଛି । ତାଙ୍କ ଉପନ୍ୟାସରେ ଓଡ଼ିଶାର ପୁରୁପଲ୍ଲୀଠାରୁ ଆରମ୍ଭକରି କଟକ, କଲିକତା ପ୍ରଭୃତି ସହରୀ ଜୀବନ ଚିତ୍ର, ପୁଣି ପର୍ଣ୍ଣକୁଟୀରର ବୁଭୁକ୍ଷୁ, ନିଃସ୍ୱ, ଦରିଦ୍ର, ଅସହାୟ ଜନତାଠାରୁ ସୁରମ୍ୟ ଅଟ୍ଟାଳିକାର ଧନୀ ଅତ୍ୟାଚାରୀ ଓ ଶୋଷକ ପର୍ଯ୍ୟନ୍ତ ସମସ୍ତ ଜନତା ରୂପାୟିତ । ଓଡ଼ିଶାର ପର୍ବପର୍ବାଣୀ ଯଥା:—ରଜ, କୁମାରପୂର୍ଣ୍ଣିମାଠାରୁ ଆରମ୍ଭକରି ବିବାହବ୍ରତ ପ୍ରଭୃତି ସାମାଜିକ ପ୍ରଥା ଓ ପରିବାରଠାରୁ ଦେଶ ପର୍ଯ୍ୟନ୍ତ ସମସ୍ତ ଚିତ୍ର ତାଙ୍କ ଉପନ୍ୟାସଗର୍ଭିତ ।

**ପାରିବାରିକ ଜୀବନର ଚିତ୍ର**

ପରିବାର ଉପରେ ସମାଜ ପ୍ରତିଷ୍ଠିତ । ସୁତରାଂ ପରିବାରର ସୁଖ-ଦୁଃଖ, ଅଭାବ-ଅନଟନ ଓ ଶାନ୍ତି ଶୃଙ୍ଖଳାରୁ ସମାଜର ଗତି ସହଜରେ

ଅନୁଭବ କରିହୁଏ । ପରିବାର ମଧ୍ୟରେ ମାନବର ଜୀବନଧାରା ହିଁ ପାରିବାରିକ ଜୀବନ ନାମରେ ଅଭିହିତ । ପରସ୍ପର ମଧ୍ୟରେ ସ୍ନେହ ଓ ଆଦରଭାବ ହିଁ ପାରିବାରିକ ଜୀବନକୁ ଦୃଢ଼ୀଭୂତ କରେ । ଆପଣାର ସୁଖ ସ୍ୱାଚ୍ଛନ୍ଦ୍ୟକୁ ବଳିଦାନକରି ଅନ୍ୟର ସୁବିଧା ଦେଖିବା ପାରିବାରିକ ଜୀବନର ମୂଳ ମନ୍ତ୍ର । ପରସ୍ପର ମଧ୍ୟରେ ସ୍ନେହ, ସୌହାର୍ଦ୍ଦ୍ୟ, ତ୍ୟାଗ, ସେବା ଓ ଭକ୍ତିଭାବ ହିଁ ପାରିବାରିକ ବନ୍ଧନକୁ ସୁଦୃଢ଼ କରେ । ସେଥିପାଇଁ ଭକ୍ତକବି ମଧୁସୂଦନ ରାଓ ଯଥାର୍ଥରେ କହିଛନ୍ତି—"ବୈକୁଣ୍ଠ ସମାନ ଆହା ଅଟେ ସେହି ଘର, ପରସ୍ପର ସ୍ନେହ ଯହିଁ ଥାଏ ନିରନ୍ତର ।" ଯେଉଁ ପରିବାରର ସଭ୍ୟମାନଙ୍କ ମଧ୍ୟରେ ପାରସ୍ପରିକ ସମ୍ପର୍କ ଅତି କ୍ଷୀଣ ସେହି ପରିବାରର ବାୟୁମଣ୍ଡଳ ଅତିବ ଅଶାନ୍ତ । ଉଦାହରଣ ସ୍ୱରୂପ 'ପରଶମଣି' ଉପନ୍ୟାସର ବଂଶୀଧରଙ୍କ ପରିବାର ଓ 'ଉପେକ୍ଷିତ' ଉପନ୍ୟାସର ଚନ୍ଦ୍ରଶେଖର ଚୌଧୁରୀଙ୍କ ପରିବାରକୁ ଗ୍ରହଣ କରାଯାଇ ପାରେ ।

**ଦାମ୍ପତ୍ୟ ପ୍ରେମ** :—ଜୀବନର ଶତ ଶତ ଦୁଃଖ ଜଞ୍ଜାଳ ମଧ୍ୟରେ ପ୍ରେମ ମଣିଷକୁ ଆନନ୍ଦ ଦିଏ, ନୀରସ ଜୀବନକୁ ସରସ କରେ । ମାତ୍ର ସେହି ପ୍ରେମରେ ଯାହାର କଳଙ୍କ ସେହି ବ୍ୟକ୍ତି ନର୍କର ଯନ୍ତ୍ରଣା ଭୋଗ କରେ । ସମାଜର ଶ୍ରେଣୀ ଭେଦରେ ଏହି ପ୍ରେମ ବିବିଧ ରୂପ ଧାରଣ କରିଥାଏ ।

ଶ୍ରମିକ ସମାଜରେ ଦାମ୍ପତ୍ୟ ପ୍ରେମ ନାରୀ ଓ ପୁରୁଷ ଜୀବନର ଏକମାତ୍ର ବନ୍ଧନରୂପେ ବିବେଚିତ ହୋଇଥାଏ । କାରଣ ଏହି ସମାଜରେ ଭରଣପୋଷଣ ନିମିତ୍ତ ସ୍ୱାମୀ ସ୍ତ୍ରୀ କେହି କାହାରି ଉପରେ ନିର୍ଭର କରନ୍ତି ନାହିଁ । ତେଣୁ ସ୍ତ୍ରୀ ଉପରେ ସ୍ୱାମୀର ଆଧିପତ୍ୟ ଖଟେ ନାହିଁ । ସ୍ତ୍ରୀ ପୁରୁଷ ଉଭୟେ ସମାଜର ସମାନ ସ୍ତରରେ ଥିବାରୁ ଉଭୟଙ୍କର ସୁଖ-ଦୁଃଖ ଓ ଅଭାବ ଅସୁବିଧାକୁ ଉଭୟେ ହୃଦୟଙ୍ଗମ କରନ୍ତି । ଫଳରେ ପରିବାରରେ ଶାନ୍ତିଶୃଙ୍ଖଳା ବିରାଜମାନ କରେ । ସ୍ୱାମୀ ହୁଏ ସ୍ତ୍ରୀ'ର ଦେବତା ଓ ସ୍ତ୍ରୀ ହୁଏ ସ୍ୱାମୀ ହୃଦୟର ଦେବୀ । ସୁତରାଂ ନିଃସ୍ୱ ଦରିଦ୍ର ଶ୍ରମିକର ଗୃହ ବୈକୁଣ୍ଠପୁରର ଶୋଭା ଧାରଣ କରେ । କିନ୍ତୁ କୁନ୍ତଳାକୁମାରୀଙ୍କ ଉପନ୍ୟାସ ସମୂହରେ ଏହି ଶ୍ରମିକ ଶ୍ରେଣୀର ଦାମ୍ପତ୍ୟ ପ୍ରେମ ପ୍ରକଟିତ ହୋଇନାହିଁ । ମଧ୍ୟବିତ୍ତ ଓ ଧନିକ ଶ୍ରେଣୀ ଉପରେ ସେ ଦୃଷ୍ଟିପାତ କରିଥିବା ଜଣାଯାଏ ।

**ମଧ୍ୟବିତ୍ତ ଶ୍ରେଣୀ :—**ମଧ୍ୟବିତ୍ତ ସମାଜରେ ସାଧାରଣତଃ ସ୍ୱାମୀ ଅର୍ଥୋପାର୍ଜନ କରେ । ନିଜସ୍ୱ ଭରଣପୋଷଣ ନିମନ୍ତେ ସ୍ତ୍ରୀକୁ ସ୍ୱାମୀ ଉପରେ ନିର୍ଭର କରିବାକୁ ପଡ଼େ । ସୁତରାଂ ସ୍ୱାମୀ ଦେବତା ଆସନରେ ବସେ ଓ ସ୍ତ୍ରୀ ଚରଣଦାସୀ ହୋଇ ପୂଜାର୍ଚ୍ଚନା କରେ । ଦେବତା ପୂଜିଲେ ସୁଫଳ ମିଳେ, ମାତ୍ର ସ୍ୱାମୀ ଦେବତାର ପୂଜା କରି ଟିକିଏ ଦୋଷରେ ସ୍ତ୍ରୀ ଗୋଇଠା ମାଡ଼ ଖାଏ ଅଥବା ପରିତ୍ୟକ୍ତା ହୁଏ । କଥା କହିବାର ଅଧିକାର ସେ ପାଏ ନାହିଁ । ନିଜକୁ ହରାଇ ପରାଧୀନତାର ଶୃଙ୍ଖଳ ପିନ୍ଧି, ଏ ଆଖି ଲୁହ ସେ ଆଖିରେ ମାରି ସ୍ତ୍ରୀ ଏଠାରେ ସବୁ ସହିଯାଏ । ଯୁଆଡ଼େ ବର୍ଷା ସିଆଡ଼େ ଛତା ଧରିବା ନ୍ୟାୟରେ ବହୁ ସ୍ତ୍ରୀ ପରିସ୍ଥିତି ସହିତ ନିଜକୁ ମିଳାଇ ଚାଲିଯାନ୍ତି । ମାତ୍ର ସେ ମିଶିବାରେ ଟିକିଏ ହେଲେ ଆନ୍ତରିକତା ନଥାଏ । ସୁତରାଂ ଏ ସମାଜରେ ପ୍ରେମ ନୁହେଁ, ବିବାହ-ବନ୍ଧନ ହିଁ ଗୃହ-ସଂସାରର ମୂଳଭିତ୍ତି । ଯେଉଁଠି ସ୍ୱାମୀ-ସ୍ତ୍ରୀ ମଧ୍ୟରେ ପ୍ରକୃତ ପ୍ରେମ ଥାଏ, ସେଠାରେ ପରସ୍ପର ଉପରେ ପରସ୍ପରର ଆଧିପତ୍ୟ କାମ କରେ । ଅର୍ଥନୈତିକ କାରଣ ଏହାର ପଥରୋଧ କରିପାରେ ନାହିଁ । ମାତ୍ର ଯେଉଁଠି ଏହି ପ୍ରେମ ଶିଥିଳ ସେଠାରେ ଅନେକ ସ୍ତ୍ରୀ ସ୍ୱାମୀର ତାଡ଼ନା ଓ ଲାଞ୍ଛନା ସହ୍ୟ କରିନପାରି ଉପାୟଶୂନ୍ୟ ଭାବେ ନିଜ ଜୀବନ ଦୀପକୁ ନିଜ ହାତରେ ନିର୍ବାପିତ କରିଥାନ୍ତି ।

ଔପନ୍ୟାସିକା କୁନ୍ତଳାକୁମାରୀଙ୍କ ଉପନ୍ୟାସରେ ଏହିପରି କେତୋଟି ମଧ୍ୟବିତ୍ତ ଶ୍ରେଣୀର ଦମ୍ପତି ଦୃଷ୍ଟିଗୋଚର ହୁଅନ୍ତି । 'ପରଶମଣି' ଉପନ୍ୟାସର ବଂଶୀଧର ଓ ଲଳିତାର ଦାମ୍ପତ୍ୟ ପ୍ରେମକୁ ଏହି ପରିପ୍ରେକ୍ଷୀରେ ବିଚାର କରାଯାଇପାରେ । ସାମାଜିକ ଦୃଷ୍ଟିକୋଣରୁ ଲଳିତା ବଂଶୀଧରକୁ ବିବାହ କରିଥିଲେ ମଧ୍ୟ ଜୀବନରେ ସେ ସୁଖୀ ହୋଇପାରିନାହିଁ । ସ୍ୱାମୀଠାରୁ ସେ ପାଇଛି ତାଡ଼ନା ଓ ଲାଞ୍ଛନା । ଅସହାୟା ବଧୂ ଲଳିତା ବାରମ୍ବାର ଅତ୍ୟାଚରିତା ହୋଇମଧ୍ୟ ତୁଣ୍ଡଖୋଲି ପ୍ରତିବାଦ କରିବାର ସାହସ ପାଇନାହିଁ । ଟିକିଏ ଅପରାଧରେ ବଂଶୀଧର ତାକୁ ପ୍ରହାର କରିବାକୁ କୁଣ୍ଠାବୋଧ କରିନାହିଁ । ଲଳିତା ମରିବାକୁ ଯାଇ ମଧ୍ୟ ମରିପାରି ନାହିଁ । ତିଳେ ତିଳେ ଦଗ୍ଧ ହେବାକୁ ସେ ବଞ୍ଚି ରହିଛି । ସୁତରାଂ ଦାମ୍ପତ୍ୟ ପ୍ରେମ ନୁହେଁ, କେବଳ ସାମାଜିକ ବନ୍ଧନ ହିଁ ସେ ଦୁଇଜଣଙ୍କୁ ଏକତ୍ର କରି ରଖିଛି ।

ସେଣ୍ଟପର 'ଭଗ୍ନଅଭିଶପ୍ତ' ଉପନ୍ୟାସର ଚନ୍ଦ୍ରଶେଖର ଶ୍ରେଷ୍ଠୀ ଓ ସରସ୍ୱତୀଙ୍କ ଦାମ୍ପତ୍ୟ ପ୍ରେମକୁ ବର୍ଣ୍ଣନା କରାଯାଇପାରେ । ଅର୍ଥଗୃଧ୍ନୁ ଶ୍ରେଷ୍ଠୀ ଦାମ୍ପତ୍ୟ ପ୍ରେମଠାରୁ ବହୁ ଦୂରରେ ଥିଲେ । ଧନ ପଛରେ ଗୋଡ଼ାଇ ଗୋଡ଼ାଇ ସେ ନିଜ ଜୀବନକୁ ବଢ଼ାଇ ଦେଇଛନ୍ତି । ପରିବାରର ସୁଖ ସେ ଦେଖିନାହାଁନ୍ତି । ସ୍ୱାମୀର ଉପ୍ୟରେ ସରସ୍ୱତୀ ଗଣ୍ଡାଏ ଭଲରେ ଖାଇପାରି ନାହାଁନ୍ତି କି ଖଣ୍ଡେ ଭଲ ପିନ୍ଧିପାରି ନାହାଁନ୍ତି । ଶ୍ରେଷ୍ଠୀ ଏ ଅନେକ ଟଙ୍କା ପଣନେଇ ଝିଅମାନଙ୍କୁ ଅପାତ୍ରରେ ବିବାହ ଦେଲାବେଳେ ସରସ୍ୱତୀ ତା'ର ପ୍ରତିବାଦ କରିବାକୁ ଯାଇ ସ୍ୱାମୀଙ୍କ ଗୋଡ଼ଧରି କାନ୍ଦି ମୁଣ୍ଡ କୋଡ଼ିଛନ୍ତି । ସ୍ୱାମୀ କର୍ତ୍ତୃକ ଲାଞ୍ଛିତା ଓ ଅପମାନିତା ହୋଇ ନୀରବରେ ଅଶ୍ରୁ ବିସର୍ଜନ କରିଛନ୍ତି । ସଙ୍ଗିନୀ ତାରାମଣିଙ୍କ ସମ୍ମୁଖରେ ନିଜ ହୃଦୟର ବେଦନାକୁ ବ୍ୟକ୍ତ କରିବାକୁ ଯାଇ ସେ କହିଛନ୍ତି— "ଦରବୁଢ଼ୀ ହେଲି—ବାଳ ପାଚିଲା, ଏବେ ବୁଝିଲି—ହଜାର ପାଟ ମଠା ପିନ୍ଧ, ହଜାରରେ ଷୀରଖିରସା ଖାଆ, ସ୍ୱାମୀଘରେ ହଜାର ରାଣୀ ହୋଇ ଦାସୀ ପୋଇଲି ଖଟୁଥାନ୍ତୁ; ଆମେ କଥାପଦକୁ ଭାଜନ ନୋହୁଁ—ଦାସୀଙ୍କ ଠାରୁକ ଆମ ଦୁର୍ଦ୍ଦଶା ବଳେ । ଦାସୀଙ୍କର ତ ହେଲେ ଭଲ ମନ୍ଦରେ ପଦେ କହିବାର ଜୁ ଅଛି, ଆଜ ଆମେ ଶଙ୍କ ସାଆନ୍ତାଣୀ, ବେପେରିଶାଳର ଠାକୁରାଣୀ, ଆମଠି ଦେହ ବୁଦ୍ଧି ବିଚାର ଅଛି, ଯୁ କିଏ ଭାବେ ? କେଉଁକଥା କିଏ ଆମକୁ ପଚାରେ ? ଏବେ ମୋ ଆଖି ଫିଟିଲା, ସବୁ ବୁଝିଲି ସଂସାର ଲୀଳା ।" (କୁନ୍ତଳକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୨୧୪)

କିନ୍ତୁ ସେହି ମଧ୍ୟବିତ୍ତ ସମାଜର ଜଗନ୍ନାଥ ନବରାଜ ଓ ସ୍ତ୍ରୀ ତାରାମଣିଙ୍କ ହୃଦୟ ମଧ୍ୟରେ ଏକ ଦାମ୍ପତ୍ୟ ପ୍ରେମର ଅନାବିଳ ଧାରା ପ୍ରବାହିତ ହେଉଥିବା ଲକ୍ଷ୍ୟ କରାଯାଏ ।

**ଧନୀକ ଶ୍ରେଣୀ** :—ସମାଜରେ ରାଜା ବା ଜମିଦାର ଶ୍ରେଣୀର ଲୋକେ ବହୁ ବିବାହ କରିବା ପ୍ରଥା ବହୁ ପୁରାତନ କାଳରୁ ଚଳିଆସିଥିଲା । ଧନର ପାରାବାର ମଧ୍ୟରେ ଅବଗାହନକରି ସେମାନେ ନାରୀର ରୂପକୁ ନେଇ ଖେଳ ଖେଳୁଥିଲେ । ପ୍ରସ୍ଫୁଟିତ ପୁଷ୍ପକୁ ଦଂଶନକରି ଭ୍ରମର ଉଡ଼ିଗଲାପରି ସେମାନେ ଗୋଟିଏ ଯୁବତୀକୁ ଛାଡ଼ି ଅନ୍ୟ ଏକ ଯୁବତୀର ପିଛା ଧରୁଥିଲେ । ପ୍ରଜାଙ୍କ ଠାରୁ ଖଜଣା ପାଉଣା ଆଦାୟକରି

ବିଳାସ ବ୍ୟସନରେ ସମସ୍ତ ଅତିବାହିତ କରିବା ସେମାନଙ୍କର ପ୍ରଧାନ ଲକ୍ଷ୍ୟ ଥିଲି । ସୁତରାଂ ଚରିତ୍ରବତ୍ତା ବା ଦାମ୍ପତ୍ୟପ୍ରେମ ସେମାନଙ୍କଠାରୁ ଆଶା କରାଯାଇ ନ ପାରେ । ପୁରୁଷର ଏକପତ୍ନୀ ଗ୍ରହଣରେ, ଏହି ପ୍ରେମ ଯେତେ ଦୃଢ଼ ବହୁପତ୍ନୀ ଗ୍ରହଣରେ ତାହା ସେତିକି ଶିଥିଳ ।

କୁନ୍ତଳାକୁମାରୀଙ୍କ 'ରଘୁଅରକ୍ଷିତ' ଉପନ୍ୟାସରେ ଜମିଦାର ଦିବାକର ମିଶ୍ର ତିନୋଟି ସ୍ତ୍ରୀ ଗ୍ରହଣ କରିଥିଲେ । ସ୍ୱାମୀର କଦାଚରଣରେ ପ୍ରଥମା ସ୍ତ୍ରୀ ଆତ୍ମହତ୍ୟା କରିଥିବା ଉଲ୍ଲେଖ ଅଛି । ଦ୍ୱିତୀୟ ସ୍ତ୍ରୀ ଶଙ୍କରୀର ଜୀବିତାବସ୍ଥାରେ ଦିବାକର ମିଶ୍ର ସୀତାକୁ ତୃତୀୟା ସ୍ତ୍ରୀ ରୂପେ ଗ୍ରହଣ କରିଛନ୍ତି ଏବଂ ଏହା ସଙ୍ଗେ ସଙ୍ଗେ ଶଙ୍କରୀ ପ୍ରତି ଘୋର ଅବହେଳା ପ୍ରଦର୍ଶନ କରିଛନ୍ତି । ଶଙ୍କରୀର ଭାବନାରୁ ଏହାର ସତ୍ୟତା ଅନୁଭବ କରିହୁଏ— "ସ୍ୱାମୀକି କ'ଣ ସେ ଊଣା ପ୍ରେମ ଭକ୍ତି କରିଥିଲା । ସ୍ୱାମୀ ତା'ର ଜୀବନର ଧନ, ନୟନର ମଣି, ସ୍ୱାମୀ ବିନା ସେ କିଛି ଜାଣେ ନାହିଁ । ସ୍ୱାମୀ ତା'ର ଜ୍ଞାନ, ଧ୍ୟାନ । ହେଲେ ସେହି ସ୍ୱାମୀ ତାକୁ ତ୍ୟାଗ କଲେ । ତାହାର ଆଖି ଆଗରେ ଅନ୍ୟ ଭାର୍ଯ୍ୟା ନେଇ ସୁଖରେ ଘର କଲେ । ଦିନେ ତାକୁ ପଚାରିଲେ ନାହିଁ । ସେ ମଲା କି ଗଲା । ଏହା ନାରୀ ହୋଇ ସେ କପରି ସହନ୍ତା ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ-ପୃ-୩୩୮)

**ବାତ୍ସଲ୍ୟ ମମତା :**—ପିତାମାତା ନିଜ ସନ୍ତାନ ସନ୍ତତିମାନଙ୍କୁ ନିଜ ଜୀବନଠାରୁ ଆହୁରି ଅଧିକ ଭଲ ପାଆନ୍ତି । ପୁତ୍ର କନ୍ୟା, ସୁନ୍ଦର-ଅସୁନ୍ଦର, ବୁଦ୍ଧିଆ ମୂର୍ଖ—ଏହି ଭାବନା ସେମାନଙ୍କ ମନକୁ ସ୍ପର୍ଶ କରିପାରେ ନାହିଁ । ବାପ ମା'ଙ୍କ ଆଖିରେ ସମସ୍ତେ ସମାନ । ସମାଜର ଏହି ଚିରନ୍ତନ ଛବି କୁନ୍ତଳା କୁମାରୀଙ୍କ ଉପନ୍ୟାସରେ ଫୁଟି ଉଠିଛି । 'ଭ୍ରାନ୍ତି' ଉପନ୍ୟାସରେ ହରିହର ଚୌଧୁରୀ ଓ ଇନ୍ଦୁମୁଖୀଙ୍କର ଏକମାତ୍ର କନ୍ୟା ଶେଫାଳି । ଶେଫାଳିର ଅସୁସ୍ଥତାରେ ପିତା ମାତା ମୂର୍ଚ୍ଛିତ ପ୍ରାୟ ହୋଇ ପଡ଼ିଛନ୍ତି । ଇନ୍ଦୁଙ୍କର ଖିଆପିଆ ନାହିଁ । ଏକମାତ୍ର ସନ୍ତାନର ଏ ଦୁର୍ଦ୍ଦଶା ସ୍ୱଚକ୍ଷୁରେ ଦେଖିବା ଅପେକ୍ଷା ମରିବା ଭଲ । ଦିନ ନାହିଁ, ରାତି ନାହିଁ ଇନ୍ଦୁ ଶଯ୍ୟା ନିକଟରେ × × × ତାଙ୍କର ସମଗ୍ର ମାତୃହୃଦୟ ସନ୍ତାନର ଅନିଷ୍ଟଶଙ୍କାରେ ଅଭିଭୂତ । ସେ କ୍ଷଣେ କ୍ଷଣେ ମୂର୍ଚ୍ଛିତା ହୋଇ ଅଛନ୍ତି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ— ପୃ-୨୭)

ସେହିପରି 'କାଳବୋଧ' ଉପନ୍ୟାସରେ ଲକ୍ଷ୍ମୀ ବାଲ୍ୟବିଧବା ହେବାପରେ ତା'ର ପିତାମାତା ଦୁଃଖରେ ଭାଙ୍ଗି ପଡ଼ିଛନ୍ତି । ପିତା ଅଚ୍ୟୁତ ମିଶ୍ରଙ୍କ ମୁହଁକୁ ଅନ୍ନ ରୁଚୁନାହିଁ । କମଳା ନିର୍ଜଳା ଏକାଦଶୀରେ ନିଜେ ହତକଷ୍ଟ କରିଅଛନ୍ତି । "କନ୍ୟାର କ୍ରମାଗତ ଦୁଃଖ ମାତାର ସହ୍ୟ ହେଲା ନାହିଁ । ଚିନ୍ତାରେ ଚିନ୍ତାରେ ତାକୁ ରୋଗଗ୍ରାସ କଲା । ଶେଷକୁ ମୃତ୍ୟୁ ଆସି ସବୁ ଯନ୍ତ୍ରଣାର ଅବସାନ କଲା । ଅଚ୍ୟୁତ ମିଶ୍ର କନ୍ୟା ଚିନ୍ତାରେ ଉନ୍ମାଦ ପ୍ରାପ୍ତ ହେଲେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ, ପୃ-୮୬)

'ପରଶମଣି' ଉପନ୍ୟାସର ଲଳିତା ନିଜର ଶ୍ରେଷ୍ଠ ପୁଅ ରାଜାକୁ ପାଇ ଜୀବନର ସବୁ ଦୁଃଖ ଭୁଲିଯାଇଛି । "ପୁଅକୁ ଚାହିଁ ଲଳିତା ଶୋକଶୋଷ ବି ଭୁଲିଯାଏ । ଏମିତି ସୁନ୍ଦର ପୁଅ କାହାର ଅଛି ? ଏ'ତ ଲଳିତାର କୋଟିନିଧି । × × × ଭିତର ପିଣ୍ଡାରେ ଖଣ୍ଡେ ଶ୍ରେଷ୍ଠ ମଶିଣା ଉପରେ ଶୁଆଇ ରାନ୍ଧୁ ରାନ୍ଧୁ ଲଳିତା ଥରେ ଅନାଇଦିଏ । ମା ମୁହଁକୁ ଚାହିଁ ପିଲାଟି ହସିଦିଏ । ଲଳିତା ହୃଦୟରେ କିଏ ମଧୁ ବରଷା କରେ ପରା । ସତେ ଯେମିତି ଚମ୍ପାଫୁଲ ମାଳଟି କିଏ ବାନ୍ଧେଇ ଦେଇଛି । ଲଳିତା ଦଉଡ଼ିଆସି ପୁଅକୁ ଡାକି ପକାଏ । ପେଟ ଭିତରେ ପୂରେଇ ରଖିବ ବସେ । × × × ପୁଅ ବାପର ଭାରି ଗେହ୍ଲା । କାମରୁ ଆସି ତାକୁ ଟିକିଏ କୋଳରେ ନ ଧରିଲେ ବାପର ତୃପ୍ତି ହୁଏ ନାହିଁ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ, ପୃ-୧୩୩/୧୩୪)

କିନ୍ତୁ ସେହି ପୁତ୍ରର ମୃତ୍ୟୁରେ ଲଳିତାକୁ ଚତୁର୍ଦ୍ଦିଗ ଅନ୍ଧକାର ଦିଶିଛି । ପୁତ୍ର ବିହୁନେ ସେ ବାୟାଣି ହୋଇଛି । ବମ୍ବାଧରର ଆଖିରୁ ଧାରଶ୍ରାବଣପରି ଅଶ୍ରୁ ବହିଚାଲିଛି । "ଲଳିତା ସବୁବେଳେ ବାୟାଣୀପରି ହେଉଛି । ଯୋଉଠି ବସୁଛି ସେଇଠି, ଖାଇଲେ ଖାଉଛି ନୋହିଲେ ନାହିଁ । ମୁଣ୍ଡ ବନ୍ଧା ନାହିଁ କି ହଳଦିଲଗା ନାହିଁ । ଅଳତା ବିହୁନେ ପାଦ ତଳିଆ ଫାଟିଗଲାଣି । ଖାଲି ସବୁବେଳେ ମନେ ପଡ଼ୁଛି ତା' ରାଜା, ତା ରଙ୍କପସରା, ତାର ସର୍ବସ୍ୱ ଧନ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୩୫) ମାତୃତ୍ୱର ଏକ କାରୁଣ୍ୟ ଜର୍ଜର ଚିତ୍ର ଏଥିରେ ସାର୍ବଜନୀନ ଆବେଦନ ବହନକରି ଫୁଟି ଉଠିଛି ।

**ଶାଶୁ ବୋହୂ ସମ୍ପର୍କ :**—ନିତ୍ୟନୈମିତ୍ତ୍ୟକ ସମାଜରେ ଶାଶୁବୋହୂ ମଧ୍ୟରେ ମଧୁର ସମ୍ପର୍କ ନ ଥାଏ । ଶାଶୁ ସର୍ବଦା ବୋହୂର ଦୋଷ-ଦୁର୍ବଳତାକୁ ଖୋଜି ବୁଲେ । ଛିଡ଼ଛଡ଼ି ଦୋଷକୁ ତାଳ କରି ସେ ସାଇପଡ଼ିଶାରେ ଗାଇବୁଲେ ଏବଂ ଝିଅର ବାପ ମା ଓ ନିଜ ପୁଅ ଆଗରେ ମଧ୍ୟ ବୋହୂର ଦୋଷ ବଖାଣିବାକୁ କୁଣ୍ଠାବୋଧ କରେ ନାହିଁ । ଦୋଷ ନଥିଲେ ମଧ୍ୟ ବାପ ମା ଝିଅର ଦୋଷପାଇଁ କ୍ଷମା ମାଗି ଶରଣ ପଶନ୍ତି । କିନ୍ତୁ ପୁଅ ବଡ଼ ଅସୁବିଧାରେ ପଡ଼େ । ଏକ ଦିଗରେ ସ୍ନେହମୟୀ ଜନନୀ; ଯିଏ ଦଶମାସ ଗର୍ଭରେ ଧରି ଅଶେଷ ଦୁଃଖ ଯାତନା ସହି ତାକୁ ମଣିଷ କରିଛନ୍ତି ଅପର ପକ୍ଷେ ନିଜ ଜୀବନ ମରଣର ସାଥୀ ପ୍ରିୟତମା-ପତ୍ନୀ । କାହାକୁ ଅବା ସେ କ'ଣ କହିବ । ଏଣେ ମାଇଲେ ଗୋ ହତ୍ୟା, ତେଣେ ମାଇଲେ ବ୍ରହ୍ମହତ୍ୟା ନ୍ୟାୟରେ ସେ କିଂକର୍ତ୍ତବ୍ୟବିମୂଢ଼ ଅବସ୍ଥାରେ ରହି ଅନେକ ମାନସିକ ଯନ୍ତ୍ରଣା ଭୋଗକରେ । ପୂର୍ବର ପରିବାରରେ ଶାଶୁ ଆହୁରି କୋପମୂର୍ତ୍ତି ଧାରଣ କରି ବୋହୂ ଉପରେ ଅତ୍ୟାଚାର କରିଥିଲେ । ବୋହୂକୁ ସବୁ ଦୁଃଖର କାରଣ ବୋଲି ଦାୟୀ କରେ । ଅନେକ ସ୍ଥଳରେ ଶାଶୁ ବୋହୂକୁ ଛାଡ଼ପତ୍ର ଦେବାର ବ୍ୟବସ୍ଥା କରି ପୁଅ ନିମିତ୍ତ ଅନ୍ୟ କନ୍ୟାର ବ୍ୟବସ୍ଥା କରେ । କେତେକ କ୍ଷେତ୍ରରେ ଦୁଷ୍ଟ ବୋହୂ ମଧ୍ୟ ପରିବାର ମଧ୍ୟରେ ଅଶାନ୍ତିର କାରଣ ହୋଇଥାଏ । କେତେକ ପରିବାରରେ ଶାଶୁ ବୋହୂ ମଧ୍ୟରେ ମଧୁର ସମ୍ପର୍କ ଥିବା ମଧ୍ୟ ଦୃଷ୍ଟିଗୋଚର ହୁଏ ।

ଔପନ୍ୟାସିକା କୁନ୍ତଳାକୁମାରୀଙ୍କ 'ପରଶମଣି' ଉପନ୍ୟାସରେ ଲଳିତାର ଶାଶୁ ଲଳିତା ଉପରେ ଅକଥନୀୟ ଅତ୍ୟାଚାର କରିଛନ୍ତି । ସକାଳୁ ସଞ୍ଜଯାଏ କାମକରି ସୁଦ୍ଧା ସେ ଶାଶୁଙ୍କର ପ୍ରିୟପାତ୍ରୀ ହୋଇପାରି ନାହିଁ । ଲଳିତାକୁ ଯୌତୁକଠାରୁ ଟଙ୍କା କମ୍ ଯାଏ କିଛି ଶାଶୁର ପସନ୍ଦ ହୋଇ ନାହିଁ । ଶାଶୁ ପାଇଁ ଲଳିତା ସ୍ୱାମୀଙ୍କ ଏକତ୍ର ରହିବାର ସୁଯୋଗ ପାଇ ନାହିଁ । ଫଳରେ ଲଳିତାର ଦାମ୍ପତ୍ୟ ଜୀବନ ଦୁର୍ବିସହ ହୋଇ ଉଠିଛି । ଶାରୀରିକ ଅସୁସ୍ଥତା ନେଇ ସକାଳୁ ବିଛଣାରୁ ଉଠିବା ଟିକିଏ ଡେରିହେଲେ ଶାଶୁ ଅକଥ୍ୟ ଭାଷାରେ ଗାଳି ଆରମ୍ଭ କରନ୍ତି—"ବେଳ ଦୁଇଘଡ଼ି ବେଳକୁ ଅନ୍ୟମାନଙ୍କୁ ପାଇଟି କରୁ କରୁ ମୁଣ୍ଡପରି ଝକାଝକ ଠେଲ ଆସି ପଶିଗଲେ ବିଭିଳମୂର୍ତ୍ତି ଶାଶୁ । ତାଙ୍କୁ ଦେଖି ଲଳିତା ଧଡ଼କିନା ବିଛଣାରୁ ଉଠିପଡ଼ି କଣରେ ପଶିଗଲା । ମେଘ ଗର୍ଜନପରି ପାଟି ମେଲାଇ ଶାଶୁ କହିଲେ,

ଉଦେ ଅଲଅଳି ଘର ଝିଅ, ଧନ ଦଶଟାକୁ ଉଠ୍ । ସକାଳୁ ଉଠି ବୁଢ଼ୀ ନୋକଟା ବାସି ପଇଟି ସାରିଲାଣି । ଏବେ ତୋ ଗୋଡ଼ ମୋଡ଼ ଦେବାପାଇଁ ବାକି ରହିଲ ପରା ! କାଲି ଟିକେ ଜର ହୋଇଥିଲା ବୋଲି ରାଣୀଙ୍କ ଛଟା ସୁଆଗ ଦେଖ । ଶାଶୁ ନଣନ୍ଦ ରନ୍ଧାବାଢ଼ି ଦେଲେ ସାଆନ୍ତାଣୀ ଗୁଣ୍ଡା-ବଳିବେ ।” (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ, ପୃ-୧୧୯) କେବଳ ସେତିକ ନୁହେଁ, ଲଳିତାର ଶାଶୁ ଲଳିତାକୁ ପୁଙ୍ଗନାରେ ବାଝେଇବାକୁ ମଧ୍ୟ କୁଣ୍ଠାପ୍ରକାଶ କରିନାହାଁନ୍ତି । ଶାଶୁର ସକଳ ବ୍ୟବହାର ମନେ ପକାଇ ଲଳିତା ଆଖିରୁ ଲୁହ ଗଡ଼ାଉଛି । ଶାଶୁ କହୁଛି—“ତୋ ଲାଗି ମୋ ପୁଅ ଖରାପ ହେଲା । ଟଙ୍କା ବନ୍ଦ କଲା, ତୁ ଅଲକ୍ଷଣୀ ଘରେ ପାଦ ଦେଲୁ ଛମୁଁ ହତଶିଙ୍ଘ ବା ଗୋଡେଇଲା । ଆସିବାର ଛମାସ ହୋଇନାହିଁ ଶଶୁରଙ୍କୁ ଖାଇଲୁ, ଆଲୋ ପାଦକେ ଶିଙ୍ଘ, ପାଦକେ ହତଶିଙ୍ଘ ।” (କୁନ୍ତଳାକୁମାରୀ ଗ୍ରନ୍ଥମାଳା ୨ୟ ଖଣ୍ଡ-ପୃ-୧୨୧)

ଲଳିତାର ଶାଶୁ ସାଇପଡ଼ିଶାଙ୍କ ନିକଟରେ ବୋହୂର ସମସ୍ତ ଦୋଷରାଶି ବର୍ଣ୍ଣନାକରି ତାକୁ ଛୁଡ଼ପଣ ଦେବା ପ୍ରସଙ୍ଗ ସମସ୍ତ କଥା କହିବାକୁ ଲଜ୍ଜା ଅନୁଭବ କରିନାହାନ୍ତି । ଲଳିତାର ପିତା ନିକଟରେ ମଧ୍ୟ ବୋହୂ ବିରୋଧରେ ଅନେକ ମନଗଢ଼ା କଥାକହି ଲଳିତାକୁ ଦୋଷାରୋପ କରିଛନ୍ତି—ବୋହୂର ଅପାର ଦୋଷରାଶି ଗୋଟି ଗୋଟି କହିସାରି ଶାଶୁ ବଡ଼ ନିଃଶ୍ୱାସଟିଏ ପକାଇ ସମୁଧୀଙ୍କୁ କହିଲେ “କହ ଦେଖିନ ଇମିତି ବୋହୂ ଦିନ କମିତି କଏ ଚଳିବ ! ପୁଅ ସୁନ୍ଦର ବୋଲି ତ ଗୁହ ସୁନ୍ଦର ନୁହେଁ । ରୂପଟା ଥିଲେ କ’ଣ ହେଲା, ଦୁର୍ଗୁଣର ତ ସୀମା ନାହିଁ । ମ, ରୂପହେନ କ’ଣ ଧୋଇ ପିଇବ, ନା, ବାଳହେନ ପାରିଶୋଇବ ? ଗୁଣ ନ ଥିଲାକୁ ତ ସବୁ ବୃଥା । ମୋ ଝିଅ ହୋଇଥିଲେ ତ ଧକାଣ୍ଡି କରି ନୁଣ ମରିଚ ଗୁଣ୍ଡା ବୋଳିଥାନ୍ତି । ପରଝିଅ, ମୋର କି କ୍ଷମତା ? ପଦେ କହିଥିଲେ ତ ଚୁଟିମୁଣ୍ଡ ଛୁହେନା, ଆଉ ଖୁଣି ଶାସନ କରିବ ।” (କୁନ୍ତଳା କୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୨୫) ପୁନଶ୍ଚ ବୋହୂ ଉପରେ କ୍ଷୁବ୍ଧ ହୋଇ ଶାଶୁ ଲଳିତାର ଏକମାତ୍ର ପୁତ୍ରକୁ ଅଭିଶାପ ଦେଇଛନ୍ତି ।

କିନ୍ତୁ 'ରଘୁ ଅରକ୍ଷିତ' ଉପନ୍ୟାସରେ ଶାଶୁ ସରସ୍ୱତୀ ଓ ବୋହୂ ରେବତୀ ମଧ୍ୟରେ ମଧୁର ସମ୍ପର୍କ ରହିଛି । ଶାଶୁ ରେବତୀଙ୍କୁ କନ୍ୟାପରି ଆଦର ଯତ୍ନ କରିଅଛନ୍ତି ।

**ଯାଆଙ୍କ ମଧ୍ୟରେ ସମ୍ପର୍କ** :—ସମାଜରେ ଶାଶୁପରି ଯାଆଙ୍କ ମଧ୍ୟରେ ମଧ୍ୟ ଭଲ ପଡ଼େନାହିଁ । କେହି କାହାରି ଶ୍ରୀ ଦେଖିପାରନ୍ତି ନାହିଁ । ଫଳତଃ ଭାଇ ଭାଇ ମଧ୍ୟରେ ଫାଙ୍କ ସୃଷ୍ଟି ହୁଏ ଓ ପରିବାରରେ ଅଶାନ୍ତିର ବହ୍ନି ଜଳିଉଠେ । ସମାଜର ଏହି ନିତ୍ୟନୈମିତ୍ତିକ ଘଟଣା କୁନ୍ତଳା-କୁମାରୀଙ୍କ ଦୃଷ୍ଟିକୁ ଏଡ଼େଇ ଦେଇପାରି ନାହିଁ । ତାଙ୍କର 'ପରଶମଣି' ଉପନ୍ୟାସରେ ଦୁଇଯାଆ ଲଳିତା ଓ ରମାସୁନ୍ଦରୀଙ୍କ ମଧ୍ୟରେ ମନର ମିଳନ ଘଟିନାହିଁ । ରମାସୁନ୍ଦରୀ ଲଳିତାର ସୁଖ ଦେଖିପାରି ନାହିଁ । ସେ ବିଭିନ୍ନ ପ୍ରକାର ଦୋଷ ଦେଇ ଲଳିତାକୁ ଅପମାନିତ କରିଛି । ଈର୍ଷାର ବଶବର୍ତ୍ତୀ ହୋଇ ଲଳିତାର ବୈଧବ୍ୟ ଚିନ୍ତାକରି ସେ ମନେ ମନେ ଆନନ୍ଦ ଅନୁଭବ କରିଛି ।

**ସଉତୁଣୀ ସମ୍ପର୍କ** :— ଦୁଇ ସଉତୁଣୀଙ୍କ ମଧ୍ୟରେ ବାଦବିବାଦ ଅଥବା ମନୋମାଳିନ୍ୟ ଘଟିବା ସମାଜର ଏକ ଚିରନ୍ତନ ସତ୍ୟ । ଜଣେ ଅନ୍ୟଜଣଙ୍କୁ ଈର୍ଷାକରେ, କେବଳ ତାକୁ ନୁହେଁ, ତା'ର ପିଲାମାନଙ୍କୁ ମଧ୍ୟ ସେ ଦେଖି ସହିପାରେ ନାହିଁ । ସ୍ୱାମୀକୁ ବୃତ୍ତିର କେନ୍ଦ୍ରବିନ୍ଦୁ କରି ସେମାନେ ପରିଧି ପରି ସ୍ୱାମୀର ଚତୁର୍ଦ୍ଦିଗରେ ଘୂରି ବୁଲନ୍ତି । ସମାଜର ଏହି ଚିତ୍ର କୁନ୍ତଳାକୁମାରୀଙ୍କ 'ରଘୁଅରକ୍ଷିତ' ଉପନ୍ୟାସରେ ପ୍ରତିଫଳିତ ହୋଇଛି । ଜମିଦାର ଭବାକର ମିଶ୍ରଙ୍କର ଦୁଇ ସ୍ତ୍ରୀ—ଶଙ୍କରୀ ଓ ସୀତା । ଏହି ଦୁଇ ସଉତୁଣୀଙ୍କ ଭିତରେ ଭଲ ପଡ଼େନାହିଁ । ଅହି ନକୁଳର ସମ୍ପର୍କ ନେଇ ସେମାନେ ଆତଯାତ ହୁଅନ୍ତି । ସ୍ୱାମୀପ୍ରିୟା ହେଲାବୋଲି ସୀତା ଉପରେ ସେ ଖଡ଼ି ମରୁଛି । ତା'ର ଦେହ ଗୋଟାକ ଜହର ପାଲଟିଛି । ପୁଣି ସୀତାର ପୁଅ ଜନ୍ମହେଲା ପରେ ଶଙ୍କରୀର ହୃଦୟ ଈର୍ଷାରେ ଜଳି ଉଠିଛି । "ଏତେ ଆନନ୍ଦ ଏତେ ଉତ୍ସବ ମଧ୍ୟରେ ବିଷାଦରେ ବୁଡ଼ିରହିଛି ଜଣେ—ସେ ସନ୍ତାନହୀନା ଶଙ୍କରୀ । ମୃତ୍ୟୁବାଣ ଯଦି ଛାତିରେ ଫୁଟିଥାନ୍ତା ତା'ହେଲେ ତା'ର ଏତେ ପୀଡ଼ା ହୋଇ ନଥାନ୍ତା । ତା'ର ଆତ୍ମା ବ୍ୟାକୁଳ ଭାବରେ ଭାଙ୍ଗି ପଡୁଥିଲା । ସେ ମଧ୍ୟ ଭବାକରଙ୍କର ସ୍ତ୍ରୀ, କିନ୍ତୁ ସ୍ତ୍ରୀ

ବୋଲାଇବାରେ ତା'ର କ'ଣ ଅଛି ? ସ୍ୱାମୀ ଥାଇ ସ୍ୱାମୀ ନାହିଁ—ଦଶ-ଜନରେ ଜନେ ଦୂରରୁ ଦେଖିବା ସୌଭାଗ୍ୟ ଘଟେ କି ନାହିଁ ସନ୍ଦେହ । ସୀତାର ଆଗମନ ପୂର୍ବରୁ ମଧ୍ୟ ତା'ର ଏହି ଅବସ୍ଥା ଥିଲା; କିନ୍ତୁ ତା' ଗୃହ ଉପରେ ଜବାକର ଆଜକାଲି ଯେ ଏପରି ଗୋଟିଏ ରୂପ ଯୌବନ ସମ୍ପନ୍ନା ପତ୍ନୀ ସହିତ କାଳ କଟାଉଛନ୍ତି, ତାହାର ଅନ୍ତଃପୁରରେ ତାଙ୍କର ରାଜ୍ୟ— ତା'ର ପ୍ରେମରେ ସେ ପାଗଳ, ତା' ରୂପରେ ସେ ମୋହିତ । ପୁଣି ତା' ଗର୍ଭଜାତ ସନ୍ତାନର ସେ ଆଜି ପିତା ଏହା ଭାବି ଭାବି ଶଙ୍କରୀର ଗୃହ ହିଂସାରେ ବଡାଣ୍ଡି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ ୨୭୦/ ୨୭୧) ସୂତିକା ଗୃହ ତ୍ୟାଗ ପରେ ସୀତା ନିଜ ପୁତ୍ର ଅମୂଲ୍ୟ ମୋହନକୁ ଶଙ୍କରୀ କୋଳରେ ଦେଲାବେଳେ ଶଙ୍କରୀ ରାଗରେ ମୁହଁକୁ ବୁଲାଇ ନେଇଛି । ସେ ମନେ ମନେ ଭାବୁଛି—"ସବୁ ତ ନେଲୁ, ସବୁ ତ ଛଡେଇଲୁ, ଏ କ'ଣ ସୁଆଗ ଟିଗୋଟାଏ ! ମୁହଁରେ କହିଲି—ହଁ ବାଞ୍ଝର କି ପୁଅ ? ତମ ପୁଅ ତମେ ରଖ, ମୋ ଆଖି କାହିଁକି ପଡ଼ିବ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୨୭୧) । ଅମୂଲ୍ୟମୋହନକୁ ସେ ଦି'ଆଖିରେ ଦେଖିପାରୁ ନଥିଲି । "ସଉତୁଣୀ ଥାଉ, ସଉତୁଣୀ କଣ୍ଢା ନଥାଉ"—ଏହି କଥା ଚିନ୍ତାକରି ଶଙ୍କରୀ ମୋ'ଠାରୁ ପୁଅକୁ ଅଲଗା କରିବ ବୋଲି ଚେରମୂଳି ଔଷଧ କରିଛି । 'ନଅତୁଣ୍ଡୀ' ଉପନ୍ୟାସରେ ଗାନ୍ଧୀ ଆଦର୍ଶରେ ଅନୁପ୍ରାଣିତ ଜମିଦାର କୃଷ୍ଣଚନ୍ଦ୍ରଙ୍କ ଚେଷ୍ଟାରେ ଉତମା ଓ ତା'ର ସଉତୁଣୀ ରମାସୁନ୍ଦରୀଙ୍କ ମଧ୍ୟରେ ମଧୁର ସମ୍ପର୍କ ପ୍ରତିଷ୍ଠିତ ହୋଇଛି ।

**ବନ୍ଧ୍ୟାର ବ୍ୟଥା :—**ବିବାହ ପରେ ନାରୀ ସର୍ବଦା ମାତୃତ୍ୱ କାମନା କରେ । ମାତୃତ୍ୱରେ ନିଜ ଜୀବନର ପରିପୂର୍ଣ୍ଣତା ଆସେ ବୋଲି ସେ ବିଶ୍ୱାସ କରେ । ସନ୍ତାନହୀନା ନାରୀ ନିଜ ଜୀବନକୁ ଅତୀବ ତୁଚ୍ଛ ମଣେ । ଅନ୍ୟର ସନ୍ତାନକୁ ଦେଖି ନିଜ ଜୀବନର ଦୁଃଖକୁ ଶତଗୁଣିତ କରି ଆଖିରୁ ଲୁହ ଢାଳେ । 'ରଘୁଅରକ୍ଷିତ' ଉପନ୍ୟାସରେ ଜମିଦାର ଜବାକର ମିଶ୍ରର ସ୍ତ୍ରୀ ଶଙ୍କରୀ ଚରିତ୍ରରେ ଏହାର ଚିତ୍ର ପ୍ରତିଫଳିତ ହୋଇଛି । ସଉତୁଣୀର ପୁଅ ଅମୂଲ୍ୟମୋହନକୁ ଦେଖି ସେ ମର୍ମାନ୍ତିକ ଯନ୍ତ୍ରଣା ଭୋଗ କରିଛି । ସେହିପରି 'ରଘୁଅରକ୍ଷିତ' ଉପନ୍ୟାସର ରସକଳା ନିଜର ସନ୍ତାନ ଜାତହେବା ପୂର୍ବରୁ ନିଜ ଜୀବନକୁ ତୁଚ୍ଛ ମଣି ବ୍ୟଥା ଅନୁଭବ କରିଛି ।

**କନ୍ୟାପଣ ଓ ବାଲ୍ୟବିବାହ** :—ସେ ସମୟରେ ବାଲ୍ୟ-ବିବାହ ପ୍ରଥା ପ୍ରଚଳିତ ଥିଲା । ବିଶେଷତଃ ବ୍ରାହ୍ମଣ ସମାଜରେ ଏହି ପ୍ରଥାର ବିଶେଷ ପ୍ରଚଳନ ଥିଲା । ପିତାମାତା ଓ ଅଭିଭାବକମାନେ ପୁଣ୍ୟାର୍ଜନ ନିମିତ୍ତ ପିଲାକନ୍ୟାଙ୍କୁ ଅଧିକ କନ୍ୟାପଣ ନେଇ ବୁଢ଼ାବର ସହିତ ବିବାହ ଦେଉଥିଲେ । କୁନ୍ତଳାକୁମାରୀଙ୍କ 'ରଘୁଅରକ୍ଷିତ' ଉପ-ନ୍ୟାସରେ ଚନ୍ଦ୍ରଶେଖର ଶ୍ରୋତ୍ରିୟ ଅଧିକ ପଣ ଟଙ୍କା ନେଇ ସୀତାକୁ ବୃଦ୍ଧ ବୃନ୍ଦାବନ ସହିତ ଦେବା ନିମିତ୍ତ ସ୍ଥିର କରିଛନ୍ତି । ମାତ୍ର ବିବାହ ଲଗ୍ନ ପୂର୍ବରୁ ବୃଦ୍ଧ ବୃନ୍ଦାବନଙ୍କର ମୃତ୍ୟୁ ଘଟିଛି । ପୁନଶ୍ଚ ଦୁଇହଜାର ଟଙ୍କା ପଣ ନେଇ ସେ ସୀତାକୁ ଚରିତ୍ରହୀନ ନିଶାଖୋର ଜମିଦାର ହିବାକର ମିଶ୍ର ସହିତ ବିବାହ ଦେଇଛନ୍ତି । ବଉଳିଅ ସାବିତ୍ରୀକୁ ତିନିଶହ ଟଙ୍କା ପଣ ନେଇ ଦୋଷେଇ ବରକୁ ଶ୍ରୋତ୍ରିୟ ଏ କନ୍ୟାଦାନ କରିଥିବା କଥା ଉଲ୍ଲେଖ ଅଛି ।

ସେହିପରି 'ଭ୍ରାନ୍ତି' ଉପନ୍ୟାସରେ ହରିହର ଶ୍ରୋତ୍ରିୟ ନିଜ କନ୍ୟା ଶେଫାଳୀକୁ ବାଲ୍ୟାବସ୍ଥାରୁ ଅନଙ୍ଗମୋହନ ସହିତ ବିବାହ ଦେଇଛନ୍ତି । 'କାଳବୋହୂ' ଉପନ୍ୟାସରେ ଅଚ୍ୟୁତ ମିଶ୍ର ନିଜ କନ୍ୟା ଲକ୍ଷ୍ମୀଙ୍କୁ ସାତବର୍ଷ ବୟସରେ, ପିତାମ୍ବର ନାମକ ଦଶବର୍ଷ ବୟସ୍କ ବ୍ରାହ୍ମଣକୁମାର ସହିତ ବିବାହ ଦେଇଛନ୍ତି ।

**ବାଲ୍ୟବିଧବାର ବେଦନା** :—ବାଲ୍ୟକାଳରୁ କନ୍ୟା ବିବାହ ଦେଇ ପିତାମାତା ପୁଣ୍ୟ ଅର୍ଜନ କରୁଥିଲେ ସତ୍ୟ, ମାତ୍ର କନ୍ୟାର ଭବିଷ୍ୟତ ବିଷୟରେ ସେମାନେ ଚିନ୍ତିତ ନଥିଲେ । ଅନେକ ସ୍ଥଳରେ କନ୍ୟା ଶାଶୁଘରକୁ ନ ଯାଉଣୁ ତାଂ ହାତରୁ ଶଙ୍ଖା ଓ ମୁଣ୍ଡରୁ ସିନ୍ଦୂର ପୋଛୁଥିଲେ । ବିବାହ କ'ଣ ଜାଣିବା ପୂର୍ବରୁ ବୈଧବ୍ୟର ନିଷ୍ଠୁର ଯନ୍ତ୍ରଣା ଅନୁଭବ କରୁଥିଲେ । ସମାଜ ସେମାନଙ୍କୁ ଆଉ ପୁନର୍ବିବାହ କରିବାର ସୁଯୋଗ ଦେଉନଥିଲା । ବାରବ୍ରତ ତେର ଏକାଦଶୀକରି ସେମାନେ ସନ୍ନ୍ୟାସିନୀ ଭାବେ ଜୀବନଯାପନ କରୁଥିଲେ । ସାରା ଜୀବନ ହା ହୁତାଶରେ ଛଟପଟ ହୋଇ ସେମାନେ ଅଶେଷ ଯନ୍ତ୍ରଣା ଭୋଗ କରୁଥିଲେ । ଅନେକ ସ୍ଥଳରେ ଏହି ବିଧବାମାନେ କୁପଥରେ ପରିଚାଳିତ ହୋଇ ସୁସ୍ଥ ସାମାଜିକ ଜୀବନକୁ କଳଙ୍କିତ କରୁଥିଲେ । ବାଲ୍ୟ ବିଧବାର ବେଦନା ଉପନ୍ୟାସିକା

କୁନ୍ତଳାକୁମାରୀଙ୍କୁ ବ୍ୟଥିତ କରିଛି । ତେଣୁ ତାଙ୍କ ସୃଷ୍ଟିରେ ସେ ଏହି ସମସ୍ୟାର ଚିତ୍ର ପ୍ରଦାନ କରିବା ସଙ୍ଗେ ସଙ୍ଗେ ତା'ର ସମାଧାନର ପନ୍ଥାମଧ୍ୟ ଦର୍ଶାଇବାକୁ ଭୁଲି ନାହାନ୍ତି । ତାଙ୍କର 'କାଳିବୋହୂ' ଉପନ୍ୟାସରେ 'ଲକ୍ଷ୍ମୀ' ଦଶ ବର୍ଷରେ ବିଧବା ହୋଇଛି । କ୍ରୀଡ଼ାଗତପ୍ରାଣା ଲକ୍ଷ୍ମୀ ତାହାର ସ୍ୱାମୀ କିଏ, କିଛି ଜାଣି ନ ଥିଲା । ବଳପୂର୍ବକ ତା ଦେହରୁ ଅଳଙ୍କାର କାଢ଼ି ଦେଲାରୁ ସେ କେତେ କାନ୍ଦିଲା, କେତେ ଅଳି କଲା, କିନ୍ତୁ ଆଉ କିଏ ଶୁଣୁଛି ? ତାହାର ମୁଣ୍ଡରୁ ସିନ୍ଦୂର ଲିଭିଲା, ହାତରୁ ଅଳଙ୍କାର ଗଲା, ଗୋଡ଼ରୁ ଅଳତା ପୋଛିହେଲା । × × × ବିଧବାର ନିର୍ଜଳା ଏକାଦଶୀ ପଡ଼ିଲା × × × ପାଣି ପାଣି ଚିତ୍କାର କରି ବାଳିକା ମୂର୍ଚ୍ଛିତା ହେଲା । ତାହାର କାନରେ ପାଣି ଟୋପିଏ ଢାଳିଗଲା । କିନ୍ତୁ ଶୁଷ୍କକଣ୍ଠ ଆର୍ଦ୍ର କରିବାର ବ୍ୟବସ୍ଥା ହେଲାନାହିଁ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ, ପୃ-୮୭)

ଲକ୍ଷ୍ମୀ ବଡ଼ ହୋଇଛି । ଦୁନିଆଁର ଭଲମନ୍ଦ ବିଷୟ ଜାଣିଛି । ତା ଜୀବନ ନିଷ୍ଫଳ ହୋଇଛି । ଏ ଜଗତରେ ତା'ର ସ୍ଥାନ ନାହିଁ । "ପୂର୍ବ ଜନ୍ମକୃତ କି ପାପ ସକାଶେ ଆଜି ସେ ଚିରବୈଧବ୍ୟ ବନ୍ଧନରେ ଆବଦ୍ଧ ହେଲା, ଏହା କିଛି ବୁଝିପାରିଲା ନାହିଁ । କେବଳ ଝରିଲା ଆଖିରୁ ଲୁହ, ଦାରୁଣ ନୈରାଶ୍ୟର ଉଷ୍ଣ ଲୋତକ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ, ପୃ-୮୬)"ଏହି କଥା ନେଇ ତା ମନରେ ଅନେକ ପ୍ରଶ୍ନ ଉଠିଛି । ମାତ୍ର ତା'ର ଉତ୍ତର ଖୋଜିବାକୁ ଯାଇ ସେ ନିରାଶ ହୋଇଛି ।

ନିଷ୍ପାପ ଜୀବନ ନେଇ ବଞ୍ଚିରହିବାକୁ ଲକ୍ଷ୍ମୀ ଇଚ୍ଛା କରିଛି । ମାତ୍ର ସମାଜ ତାହା କରିଇ ଦେଉନାହିଁ । କମ୍‌ଠ ଦୁଶ୍ଚରିତ୍ର ବ୍ୟକ୍ତିମାନେ ଲକ୍ଷ୍ମୀର ଚରିପାଖେ ଗୁଞ୍ଜରଣ ସୃଷ୍ଟି କରିଚନ୍ତି । ସଂସାର ତ୍ୟାଗ କଲାପରେ ମଧ୍ୟ ଲକ୍ଷ୍ମୀ ଶାନ୍ତିରେ ରହିପାରୁନାହିଁ । ସୁତରାଂ ମୃତ୍ୟୁକୁ ଏକମାତ୍ର ପନ୍ଥା-ବୋଲି ସେ ଧରିନେଇଛି ।

ମରିବାକୁ ଯାଇ ଲକ୍ଷ୍ମୀ ମରିପାରି ନାହିଁ । ସ୍ୱାମୀ ସଦାନନ୍ଦଙ୍କ ଦ୍ୱାରା ସେ ମୃତ୍ୟୁ ମୁଖରୁ ରକ୍ଷା ପାଇଛି ।

ଲକ୍ଷ୍ମୀର ସୃଷ୍ଟିବେଳକୁ ବିଧବା ବିବାହ ସପକ୍ଷରେ ସାରଦା ଆଇନ୍ ପ୍ରଚଳିତ ହେଲାଣି । ସୁତରାଂ ସଂସ୍କାରମନା ଶିଳ୍ପୀ କୁନ୍ତଳାକୁମାରୀ

ଝିଅଟା ଲକ୍ଷ୍ମୀଙ୍କୁ ଶିକ୍ଷିତ ଯୁବକ ଚନ୍ଦ୍ରୋଦୟ ସହିତ ବିବାହ ଦେଇଛନ୍ତି । ସେମାନଙ୍କ ଦାମ୍ପତ୍ୟ ଜୀବନ ସୁଖମୟ ହୋଇଛି ।

ସେହିପରି 'ରଘୁଅରକ୍ଷିତ' ଉପନ୍ୟାସର ଫୁଲମଞ୍ଜରୀ ବିଧବା ହୋଇ ବାପ ଘରକୁ ଚାଲି ଆସିଛି । ସମାଜ ଦୃଷ୍ଟିରୁ ସେ ସୁରଞ୍ଜନଙ୍କୁ ପୁନର୍ବିବାହ କରିପାରିନାହିଁ ଫଳତଃ ପଥଚ୍ୟୁତ ହୋଇ ସେ ଅନେକ କୁକାର୍ଯ୍ୟ କରିଛି । ପରବର୍ତ୍ତୀ ସମୟରେ ଡାକ୍ତର ସେନ୍‌ଙ୍କୁ ବିବାହକରି ସେ ସୁଖୀ ହୋଇପାରିଛି ।

**ପରଦା ପ୍ରଥା :—** ମୁସଲମାନ୍ ରାଜତ୍ୱ ପୂର୍ବରୁ ଭାରତୀୟ ନାରୀ ନବରଙ୍ଗର ପୋଷାକ ପରିଧାନ କରି ନାନାପ୍ରକାର ଅଳଙ୍କାରରେ ବିମଣ୍ଡିତା ହୋଇ ସ୍ୱାଧୀନ ଭାବେ ବିଚରଣ କରୁଥିଲେ । ମାତ୍ର ମୁସଲମାନ ରାଜତ୍ୱ ସମୟରେ ସାଧାରଣ ନାରୀପଣର ଅଭାବ ଅନୁଭବ କରି ହିନ୍ଦୁ ନାରୀ ପରଦାଦ୍ୱାରା ନିଜକୁ ଆବୃତ୍ତ କଲେ । କିନ୍ତୁ ଦକ୍ଷିଣ ଭାରତରେ ଏହି କୁପ୍ରଥା କୌଣସି ସମାଜରେ ପ୍ରଚଳିତ ନଥିଲା । ପଞ୍ଚଦଶ ଶତାବ୍ଦୀରେ ଉତ୍କଳୀୟ ରାଜବଂଶରେ ବୟସ୍କ ନାରୀମାନଙ୍କ ପାଇଁ ପରଦାର କଟକଣା ନଥିବା ସାରଳା ମହାଭାରତରେ ଉଲ୍ଲେଖ ଅଛି । କେବଳ ନବବଧୂ ଓ ଯୁବତୀ କନ୍ୟା ପରଦାଦ୍ୱାରା ନିଜକୁ ଆବୃତ୍ତ କରୁଥିଲେ । ଊନବିଂଶ ଏବଂ ବିଂଶ ଶତାବ୍ଦୀରେ ସମାଜରେ ପରଦା ପ୍ରଥାର ପ୍ରଚଳନ ଥିଲା । ବିବାହିତା ସ୍ତ୍ରୀମାନେ ସାଧାରଣତଃ ମୁଣ୍ଡରେ ଓଢ଼ଣା ଦେଉଥିଲେ ।

କୁନ୍ତଳାକୁମାରୀଙ୍କ 'ନଅଭୁଣ୍ତୀ' ଉପନ୍ୟାସରେ ଉତ୍ତମା ତା ଶାଶୁଘରକୁ ଯିବା ବାଟରେ ଫକୀର କହିଛି—"ଦେଖ୍, ଗାଁ ଦିଶିଲାଣି, ଶଶୁର ମଳାଶୁର ବାଲରେ ଥିବେ । ମୁଣ୍ଡରେ ଓଢ଼ଣା ଟାଣ, ନଇଲେ କହିବେ ବଡ଼ ଅଲାଜୁକ ଘର ଝିଅ, ତାକୁ କଥାଜ ସରମ ଅଛି ନା ତା'ର ଡଙ୍ଗ ପଣ ଅଛି । ଆଲୋ ମାଧିଆ ମା ମୁଣ୍ଡରେ ଓଢ଼ଣା ଟାଣ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ— ପୃ-୭୩)

ପୁନଶ୍ଚ 'ରଘୁଅରକ୍ଷିତ' ଉପନ୍ୟାସର ଅବିବାହିତା ସୀତା ଓ ରସକଳା ମୁଣ୍ଡରେ ଓଢଣା ଦେଇଥିବା କଥା ଉଲ୍ଲେଖ ଅଛି ।

**ବହୁପତ୍ନୀ ଗ୍ରହଣ ପ୍ରଥା :—**ଆର୍ଯ୍ୟ ସମାଜରେ ବହୁପତ୍ନୀ ଗ୍ରହଣ ପ୍ରଥା ବହୁ ପୁରାତନ । ବୈଦିକ ଯୁଗରୁ ଏଯାବତ୍ ଏହି ପ୍ରଥା ପ୍ରଚଳିତ ହୋଇ ଆସୁଅଛି । ପଞ୍ଚଦଶ ଶତାବ୍ଦୀରେ ଉତ୍କଳର ରାଜପରିବାରରେ ବହୁପତ୍ନୀ ଗ୍ରହଣ ପ୍ରଥା ପ୍ରଚଳିତ ଥିଲା । ଗଙ୍ଗବଂଶର ପ୍ରତିଷ୍ଠାତା ଚୋଡ଼ଗଙ୍ଗଦେବଙ୍କର ବହୁ ରାଣୀ ଥିବା ଇତିହାସ କହେ । କପିଳେନ୍ଦ୍ରଦେବଙ୍କର ଏକାଧିକ ପତ୍ନୀ ଓ ପୁରୁଷୋତ୍ତମ ଦେବଙ୍କର ନବପତ୍ନୀ ଓ ମୋଗଲ ଶାସକ ଆଉରଙ୍ଗଜେବ ଅନେକ ସ୍ତ୍ରୀ ଗ୍ରହଣ କରିଥିବା କଥା ଇତିହାସରେ ବର୍ଣ୍ଣିତ ଅଛି । ଏକାଦଶ ଅଷ୍ଟାଦଶ ଓ ଊନବିଂଶ ଶତାବ୍ଦୀରେ ଓଡ଼ିଶାର ରାଜା ଓ ଜମିଦାର ପରିବାରମାନଙ୍କର ବହୁପତ୍ନୀ ଗ୍ରହଣ ପ୍ରଥାର ପ୍ରଚଳନ ଥିଲା । ସମାଜରେ ପ୍ରଚଳିତ ଏହି ପ୍ରଥାକୁ କୁନ୍ତଳାକୁମାରୀ ତାଙ୍କ ଉପନ୍ୟାସରେ ସ୍ଥାନ ଦେଇଛନ୍ତି ।

'ରଘୁଅରକ୍ଷିତ' ଉପନ୍ୟାସରେ ଢବାକର ମିଶ୍ର ତିନୋଟି ସ୍ତ୍ରୀ, 'କାଳିବୋହୂ' ଉପନ୍ୟାସରେ ଅଚ୍ୟୁତ ମିଶ୍ର ଗୋଟିଏ ସ୍ତ୍ରୀ ଏବଂ 'ନଅଗୁଣ୍ଠି' ଉପନ୍ୟାସରେ ଜମିଦାର କୃଷ୍ଣଚନ୍ଦ୍ର ଦୁଇଟି ସ୍ତ୍ରୀ ଗ୍ରହଣ କରିଥିବା ବିଷୟ ବର୍ଣ୍ଣିତ ଅଛି ।

**ଜାତିଭେଦ ସମସ୍ୟା :—**ତତ୍କାଳୀନ ସମାଜରେ ଛୁଆଁ ଅଛୁଆଁ ଭେଦଭାବ ବଡ଼ ପ୍ରବଳ ଥିଲା । ଶୂଦ୍ରମାନଙ୍କୁ ଉଚ୍ଚ ବର୍ଣ୍ଣର ଲୋକେ ସ୍ପର୍ଶ କରୁନଥିଲେ । ଏପରିକି ସେମାନଙ୍କ ଛାଇ ପଡ଼ିଲେ ସବର୍ଣ୍ଣ ଲୋକେ ଆଉଥରେ ସ୍ନାନ କରୁଥିଲେ । ସମାଜରେ ସେମାନଙ୍କ ସ୍ଥାନ ନିମ୍ନରେ ଥିଲା । ସାମାଜିକ ଜୀବନର ଏହି ଚଳଣି କୁନ୍ତଳାକୁମାରୀଙ୍କ ଉପନ୍ୟାସଗୁଡ଼ିକରେ ନିଚ୍ଛକ ରୂପ ଲାଭ କରିଛି ।

କୁନ୍ତଳାକୁମାରୀଙ୍କ 'କାଳିବୋହୂ' ଉପନ୍ୟାସରେ ଦେଶର ସଂସ୍କାରକାମୀ ଯୁବକ ସଦାନନ୍ଦ ଓ ଚନ୍ଦ୍ରୋଦୟଙ୍କ ଉଦ୍ୟମରେ ଅଛୁଆଁ ଲୋକେ ବିଦ୍ୟାଳୟରେ ଶିକ୍ଷାଲାଭର ସୁବିଧା ପାଇଛନ୍ତି । ଧର୍ମଶାଳାରେ ପାଖାପାଖି ବସି ବିଭିନ୍ନ ଜାତିର ଲୋକେ ଏକ ପଙ୍କ୍ତିରେ ଆହାର କରିଛନ୍ତି; ମାତ୍ର ଏହା ରକ୍ଷଣଶୀଳ ସବର୍ଣ୍ଣ ହିନ୍ଦୁମାନଙ୍କର ଦୃଷ୍ଟିକଟୁ ହୋଇଛି ।

'ଧର୍ମ ଗଲା, ଧର୍ମ ଗଲା' ବୋଲି କହି ସେମାନେ ଚେଇଁ ଉଠିଛନ୍ତି । "କେଉଁ ଅଡ଼ିକାର ଗୋଟାଏ ଭଣ୍ଡ ବାବାଜୀ । ହରିବୋଲିଆ ଦ୍ୱାରକାନାଥ, ଆଉ କାଲି ସକାଳର ଟୋକା ଚନ୍ଦ୍ରୋଦୟ ଯେ ଶେଷକୁ ବାଲେଶ୍ୱର ଜିଲ୍ଲାଟାଯାକ ଲଣ୍ଡଭଣ୍ଡ କରିବେ, ଏହା ଶତପଥୀ, ମିଶ୍ର, ଷଡ଼ଙ୍ଗୀ, ଚତୁର୍ବେଦୀ, ପଟ୍ଟନାୟକ, ରାଉତରାୟ, ପୃଷ୍ଟି, ସାହୁ ଇତ୍ୟାଦି କେହି ଭାବି ନଥିଲେ । ତାଙ୍କର ଅବିମୃଶ୍ୟକାରିତା ଫଳରେ ତ ଏମାନେ ମାତି ଉଠିଲେଣି । ଏହାକୁ ନ ଭାବିଲେ ନ ଚଳେ । ଦଶପନ୍ଦର ଟୋକା ଜାତିକୁଳ ଛାଡ଼ି ଯଦିବା ହାଡ଼ି, ପାଣ, ପଠାଣଙ୍କ ସଙ୍ଗେ ବସି ଏକା ପଙ୍ଗତରେ ଖାଇଲେ ତାଙ୍କୁ ତାଙ୍କ ବାପଦାଦା ଆଦିକରି ସମସ୍ତ ପରିବାରଙ୍କୁ ଜାତିରୁ ଅଟକ କରି ପକାଇଲେ ମିଶ୍ର, ଷଡ଼ଙ୍ଗୀଙ୍କର ତ କର୍ତ୍ତବ୍ୟ ଶେଷ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୯୫)

ତାଙ୍କର 'ନଅକୁଣ୍ଡୀ' ଉପନ୍ୟାସର ଜମିଦାର କୃଷ୍ଣଚନ୍ଦ୍ର ପ୍ରଜାଙ୍କୁ ସଭାରେ ଭାଷଣ ଦେଲାବେଳେ ଏହି ଛୁଆଁ ଅଛୁଆଁ ଭେଦଭାବ ବିଷୟରେ ବୁଝାଇବାକୁ ଯାଇ କହିଛନ୍ତି—"ହେଇତ ଦେଖ, ଏଇ ଯୋଉ ହାଡ଼ି, ପାଣ, ମୋଚି, ଚମାରକୁ ଆମେ ଶ୍ରେଷ୍ଠଜାତି କହୁଛେଁ, ତାକୁ ଖାଲି ଛୁଇଁ ଦେଲେ ମାଷ ହୋଇ ଯାଉଛେଁ, ଭାବିଲାବେଳକୁ ତାଙ୍କ କାମଟା କିଏ ତୁଲାନ୍ତା ? × × ଆମର ଏତେ ଉପକାରୀ ମଣିଷକୁ ଆମେ ଜାତି ପାଟକରୁ ଅଲଗା ରଖି ଛୁଆଁ ଛୁଆଁ ରଡ଼ି ଛାଡ଼ିଲେ ହବ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୭୭)

ପୁନଶ୍ଚ 'ରଘୁଅରକ୍ଷିତ' ଉପନ୍ୟାସରେ ଜଗନ୍ନାଥ କବିରାଜ ହାଡ଼ିଆଣୀକୁ ଚିକିତ୍ସାକରି ଘରକୁ ଫେରିଲା ପରେ ସ୍ତ୍ରୀ ତାରାମଣି ତାଙ୍କୁ ପୁଣି ଥରେ ଗାଧୋଇବା ପାଇଁ କହିଛନ୍ତି । ସମାଜରେ ଛୁଆଁ ଅଛୁଆଁ ଭେଦଭାବ ଯେ ଅତି ଉତ୍କଟ ରୂପ ଧାରଣ କରିଥିଲା । ଏଥିରୁ ତାର ସତ୍ୟତା ବେଶ୍ ହୃଦୟଙ୍ଗମ କରିହୁଏ ।

**ବିବାହ :**—ଭାରତୀୟ ସମାଜରେ ଯୁଗେ ଯୁଗେ ବିବାହର ସ୍ୱୀକାର କରାଯାଇଛି । ହିନ୍ଦୁ ମୁନିଋଷିମାନଙ୍କ ଦୃଷ୍ଟିରେ ବିବାହର ଲକ୍ଷ୍ୟ ଚତୁର୍ବିଧ । ଯଥା :—ଧର୍ମ, କାମ, ସୃଷ୍ଟି ଓ ସଂରକ୍ଷଣ । ସୁତରାଂ ବ୍ୟକ୍ତିର

ସାମାଜିକ ଜୀବନରେ ବିବାହ ଏକ ମହତ୍ତ୍ୱପୂର୍ଣ୍ଣ ପର୍ଯ୍ୟାୟ । ଏହା ପରିବାର ଗଠନର ମୂଳଭିତ୍ତି । ବୈବାହିକ ବନ୍ଧନରେ ସ୍ତ୍ରୀ ପୁରୁଷ ସୁସ୍ଥ ସ୍ୱଚ୍ଛନ୍ଦ୍ୟ ତଥା ସହଯୋଗପୂର୍ଣ୍ଣ ଦାମ୍ପତ୍ୟ ଜୀବନ ଉପଭୋଗ କରିଥାନ୍ତି । ଏକ ସୁସଂଗଠିତ ଓ ସୁସଂହତ ସମାଜ ଗଠନ କରିବା ଦିଗରେ ବିବାହର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ।

ପାତ୍ରପାତ୍ରୀ ମନୋନୟନରେ ଯୋଗ୍ୟତା ଓ ବୟସ ବିଚାର, ପ୍ରସ୍ତାବ ପ୍ରେରଣ, ଜାତକ ବିଚାର, ଲଗ୍ନ ନିରୂପଣ, ବନ୍ଧୁ ନିମନ୍ତ୍ରଣ, ବିବାହ ଉତ୍ସବ ଓ କର୍ମକର୍ତ୍ତା, ବାଦ୍ୟ ବାଜଣା ଓ ଭୋଜି, କନ୍ୟା ବିଦାୟ ଓ ଯୌତୁକ ଆଦି ବିଭିନ୍ନ ପର୍ଯ୍ୟାୟ ଦେଇ ବିବାହ କାର୍ଯ୍ୟଟି ସମ୍ପନ୍ନ ହୋଇଥାଏ । ସାମାଜିକ ଜୀବନର ଏହିସବୁ ଚିତ୍ର କୁନ୍ତଳାକୁମାରୀଙ୍କ ସନ୍ଧାନୀ ଦୃଷ୍ଟିରୁ ବାଦ୍ ଯାଇ ନାହିଁ ।

ବିବାହରେ ବରର ବୟସ ଧରାଯାଉନଥିଲା । 'ବର ଚଉରକୁ କନିଆଁ ଦଶ' ମତ ପ୍ରଚଳିତ ଥିଲା । ଜମିବାଡ଼ି ଧନରତ୍ନ ଥିଲା ବରର ମାପକାଠି । ରୂପ, ଚରିତ୍ର ବା ବିଦ୍ୟାକୁ ବିଶେଷ ଗୁରୁତ୍ୱ ଦିଆଯାଉନଥିଲା । 'ରଘୁ ଅରକ୍ଷିତ' ଉପନ୍ୟାସରେ ଶେଖର ଗୌଧୁରୀ ନିଜ କନ୍ୟା ସୀତା ନିମିତ୍ତ ଚରିତ୍ରହୀନ ନିଶାଖୋର ବୟସ୍କ ଜମିଦାରକୁ ବିବାହ ଦେବା ନିମନ୍ତେ ସ୍ଥିର କରିଛି । ସ୍ତ୍ରୀ ସରସ୍ୱତୀ ଏହାର ପ୍ରତିବାଦ କରି ଶିକ୍ଷିତ ଚରିତ୍ରବାନ୍ ଦେବକୃଷ୍ଣ, ଦେବପ୍ରସାଦ ରଘୁନାଥ ସହିତ ସୀତାକୁ ବିବାହ ଦେବା ନିମିତ୍ତ ଅନୁରୋଧ କରିଛନ୍ତି । ଗୌଧୁରୀ ତାଙ୍କ ପ୍ରସ୍ତାବକୁ ପ୍ରତ୍ୟାଖ୍ୟାନ କରି କହିଛନ୍ତି—"ଖାଲି ଆଖି ଆଗରେ ଦେଖୁଛ ତଅପ ଚକ୍‌କଣ ରଘୁଆକୁ, ମା' ନାହିଁ, ବୋପା ନାହିଁ, ଖତର ନାହିଁ, ମର୍ଯ୍ୟାଦା ନାହିଁ, ମୂଳିଆ ମୁଣ୍ଡ—ମା' ଧାନ କୁଟୁଥିଲା, କେଉଁ ମୋ'ଠି ବୋଝ ବୋହି ଭାତ ଖାଉଛି ! ସେ ପୁଣି ଆମ ସରି ହେବ ' ବିବାକର ତୁମକୁ ଗନ୍ଧଉଛି ? ହଜାର ବାଟି ଧାନ ଜମି, ପେଡ଼ି ପେଡ଼ି ସୁନାରୁପା ଅଳଙ୍କାର ଘରେ ଖୁନ୍ଦା ହୋଇଛି । ଝିଅ ପାଟରାଣୀ ହେବ । × × ତାପରି ଦାତା କିଏ ? ତା'ପରି ମର୍ଯ୍ୟାଦାବନ୍ତ କିଏ ? କେଉଁଠି ଟିକିଏ ମଦ ଖାଏ, କେଉଁଠି ଟିକେ କାହାକୁ ଗୁହେଁ— ଏଇ ସବୁରେ ଗଣି ପଡ଼ୁଛି ? ଏଇସବୁ ଧରି ତୁମେ ସଂସାର

କରିବ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ ପୃ—୨୦୮) ପୁଣି—"ମନ୍ତ୍ରେଶ୍ୱରଙ୍କ ବି.ଏ.ପାସ୍ କଲା ପୁଅକୁ କନ୍ୟାଦାନ କରିବାକୁ ଅନିଚ୍ଛା ପ୍ରକାଶ କରି ସେ କହିଛନ୍ତି—କସଣୀ ବାବୁଙ୍କ ପୁଅକୁ ଜୁଆଁଇ କରିବ ? ସାତ ପୁରୁଷରେ ମାଣେ ଜମି ନାହିଁ । ନା ଅଛି ଘରେ କନା, ନା ଅଛି ଦାନା × × ମଲା ମୋର ଦୋ' ପଟି, ପେଟରେ ଓଦା କନା ବନ୍ଧା, ପାଠୁଆବର ତ' ଦାଣ୍ଡରେ ପଡ଼ି ଗଡ଼ଗଡ଼ଉଛନ୍ତି ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୯୯)

'ନଅଗୁଣ୍ଡି' ଉପନ୍ୟାସରେ ରତ୍ନମା ବାହାଘରରେ ଲୋକ ବର ବିଷୟରେ କହିଛନ୍ତି—"ବରଟା ଏବେ କ'ଣ ଅସୁନ୍ଦର ହେଲିଣି କି ଖଣ୍ଡିଆ ନା' କଣା କୁଜା । ଖାଲି ବର୍ଣ୍ଣଟା ମସିଆ । ଆଉ ସଂସାରରେ ମର୍ଦ୍ଦ ପୁଅର ରଙ୍ଗ କିଏ ବାଛୁଥାଏ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୫୯)

ବାହାଘରରେ ଜାତକ ବିଚାର ଓ ଲଗ୍ନ ନିରୂପଣ ହେଉଥିଲା । 'ରଘୁଅରକ୍ଷିତ' ଉପନ୍ୟାସରେ ଔପନ୍ୟାସିକା ସୀତାର ବାହାଘରରେ ଓ 'ନଅଗୁଣ୍ଡି' ଉପନ୍ୟାସରେ ରତ୍ନମା ବାହାଘରରେ ଏହାର ସୂଚନା ପ୍ରଦାନ କରିଅଛନ୍ତି ।

ବାହାଘରରେ ବନ୍ଧୁବାନ୍ଧବ ନିମନ୍ତ୍ରଣ ହୋଇ ଆସୁଥିଲେ । ବର, ବାଜା, ବାଣ ଫୁଟେଇ, ଶୋଭଣୀ କରି ଆସୁଥିଲା । ବିବାହ କାର୍ଯ୍ୟ ଶେଷ ହେଲେ ବାପ ମାଆ କନ୍ୟା ସାଥିରେ କିଛି ଦ୍ରବ୍ୟ ଯୌତୁକ ସ୍ୱରୂପ ଦେଇ ବର କନ୍ୟାକୁ ବିଦାୟ ଦେଉଥିଲେ । 'ରଘୁଅରକ୍ଷିତ' ଉପନ୍ୟାସରେ ସୀତାର ବାହାଘରରେ ବର ବାଣ ଫୁଟାଇ ଦାଣ୍ଡ ଆଲୁଅ କରି ଜାକଜମକରେ ବାହାହେବାକୁ ଆସିଥିବା ବର୍ଣ୍ଣିତ ଅଛି । ବିବାହର ବିଭିନ୍ନ କର୍ମକର୍ମାଣି ଯଥା—ମଣ୍ଡପ ଠ, କୁଶବନ୍ଧନ ଓ ସିନ୍ଦୂର ଗ୍ରହଣ ଆଦି ଯଥାବିଧିରେ ହୋଇଥିବା ଉଲ୍ଲେଖ ଅଛି । 'ପରଶମଣି' ଉପନ୍ୟାସରେ ଲଳିତା ବାହାଘରରେ କିଛି ଯୌତୁକ ଆଣିଥିବା କଥା ତା'ର ଶାଶୁଙ୍କ ବକ୍ତବ୍ୟରୁ ଜଣାପଡ଼େ ।

**ପର୍ବପର୍ବାଣୀ**—ବହୁ ପ୍ରାଚୀନକାଳରୁ ଧର୍ମପ୍ରାଣ ହିନ୍ଦୁଜାତି ବିଭିନ୍ନ ଓଷାବ୍ରତ ଓ ପର୍ବପର୍ବାଣୀ ପାଳନ କରି ଆସୁଛି । ସେଗୁଡ଼ିକ ମଧ୍ୟରୁ କେତେକ ପୁରାଣ ଓ ଧର୍ମଶାସ୍ତ୍ରାନୁମୋଦିତ ଓ ଆଉ କେତେକ ନାରୀବ୍ରତ । ନାରୀବ୍ରତ ଭିତରେ ମଧ୍ୟ ଅନେକ କୁମାରୀବ୍ରତ । ଏଗୁଡ଼ିକ ମଧ୍ୟରୁ କେତେକ ଆଞ୍ଚଳିକ ଓ କେତେକ ପାରମ୍ପରିକ ବିଶ୍ୱାସ ଉପରେ ପ୍ରତିଷ୍ଠିତ । ସର୍ବ ଭାରତୀୟପର୍ବ ସହିତ ବହୁ ସ୍ୱତନ୍ତ୍ରପର୍ବ ଉତ୍କଳରେ ପାଳିତ ହୋଇ ଆସୁଛି । ଉତ୍କଳୀୟ ସଂସ୍କୃତିର ଅନ୍ୟନାମ ହେଉଛି ଜଗନ୍ନାଥ ସଂସ୍କୃତି । ଓଡ଼ିଆ-ମାନଙ୍କର ଉପାସ୍ୟଦେବତା ଜଗନ୍ନାଥଙ୍କର ଦ୍ୱାଦଶଯାତ୍ରା ଓ ଲିଙ୍ଗରାଜ କ୍ଷେତ୍ରରେ ଚତୁର୍ଦ୍ଦଶ ଯାତ୍ରା ପ୍ରଚଳନ ବିଧିରୁ ଓଡ଼ିଶାର ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ପରିସ୍ଫୁଟ । ଏହି ପର୍ବପର୍ବାଣୀଗୁଡ଼ିକ ମଧ୍ୟରୁ କେତେକର ଚିତ୍ର କୁନ୍ତଳା-କୁମାରୀଙ୍କ ଉପନ୍ୟାସରେ ଦେଖିବାକୁ ମିଳେ ।

**କୁମାରପୂର୍ଣ୍ଣିମା**—ଆଶ୍ୱିନମାସ ଶୁକ୍ଳପକ୍ଷ ପୂର୍ଣ୍ଣିମା ତିଥିରେ କୁମାରଉତ୍ସବ ପାଳିତ ହେବାର ବିଧି । କୁମାରୀମାନେ ଏହି ପର୍ବ ପାଳନ କରିଥାନ୍ତି । ଶିବପୁରାଣରେ ଉଲ୍ଲେଖ ଅଛି ଯେ ଏହି ଦିବସରେ କାର୍ତ୍ତିକ କୁମାରଙ୍କର ଜନ୍ମ ହୋଇଥିଲା । ସୁତରାଂ କୁମାରୀମାନେ ସୁନ୍ଦର ବରପ୍ରାପ୍ତି ନିମନ୍ତେ ନୂତନବସ୍ତ୍ର ପରିଧାନ କରି ସଞ୍ଜରେ ତୁଳସୀ ଚଉରାମୂଳେ ଫୁଲରେ କୋଠି କରି ଚନ୍ଦ୍ର ପୂଜା କରନ୍ତି । ସମାଜରେ ପାଳିତ ହେଉଥିବା ଏହି ପର୍ବ କୁନ୍ତଳାକୁମାରୀଙ୍କର 'ରଘୁଅରକ୍ଷିତ' ଉପନ୍ୟାସରେ ପ୍ରତିବିମ୍ବିତ ହୋଇଛି । ବୈଦ୍ୟଧୂରୀଙ୍କ ସାନଝିଅ ସୀତା ଏହି ଓଷା କରିଛି ।

**ରଜ**—ରଜ ଓଡ଼ିଶାର ଏକ ବଶିଷ୍ଟପର୍ବ । ଜ୍ୟେଷ୍ଠମାସର ଶେଷ ଓ ଆଷାଢ଼ର ପ୍ରଥମ ତିଥିରେ ଏହି ପର୍ବ ତିନଦିନ ଧରି ପାଳିତ ହୁଏ । ଘରେ ଘରେ ପିଠାପଣା ହୁଏ । ସମସ୍ତେ ନୂତନବସ୍ତ୍ର ପରିଧାନ କରନ୍ତି । ଆବାଳ ବୃଦ୍ଧ ବନିତା କ୍ରୀଡ଼ାରେ ମାତିଯାନ୍ତି । ଚତୁର୍ଦ୍ଦିଗରେ ଆନନ୍ଦର ଲହରୀ ଛୁଟେ ।

କୁନ୍ତଳାକୁମାରୀଙ୍କର 'ରଘୁଅରକ୍ଷିତ' ଉପନ୍ୟାସରେ ଏହି ପର୍ବର ବର୍ଣ୍ଣନା ରହିଛି । ସ୍ତ୍ରୀଲୋକମାନେ ସଜବାଜ ହୋଇ କଉଡ଼ି ଚାପ

ଖେଳନ୍ତି । ଭଜନପାନ ବାଣ୍ଟିଛନ୍ତି । "ଘରଦ୍ୱାର ଊଷାଲୋକ ସଙ୍ଗେ ସଙ୍ଗେ ଗାଁ ଶତପଥୀଙ୍କ ଘରେ ମଙ୍ଗଳ ମଧୁର ବାଜା ଉଠି, ଉଦ୍‌ଯୋଗୋତ୍ସବର ଶୁଭାଗମନ ଜଣାଇଦେଲା । ଗାଁ ସ୍ତ୍ରୀଲୋକେ ପାଟଲୁଗା ଗହଣା ଗଣ୍ଠିରେ ସଜବାଜ ହୋଇ ଧାଡ଼ି ଧାଡ଼ି ଆସି ଶତପଥୀଙ୍କ ବୃହତ୍ ଅଗଣାରେ ପଶିଗଲେ । ଆଜି ମହା ଆନନ୍ଦର ଦିନ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟଖଣ୍ଡ— ପୃ-୧୬୩)

**ଏକାଦଶୀବ୍ରତ**—ଶାସ୍ତ୍ର ଏବଂ ପୁରାଣମାନଙ୍କରେ ଏକାଦଶୀ-ବ୍ରତର ମହିମା କୀର୍ତ୍ତନ କରାଯାଇଛି । ଏହି ବ୍ରତ ପାଳନ କଲେ ବୈକୁଣ୍ଠଲାଭ ହୁଏ ଏବଂ ମୁକ୍ତି ମିଳେ ବୋଲି ଲୋକେ ବିଶ୍ୱାସ କରନ୍ତି । ଏଥିରେ ନାରାୟଣଙ୍କୁ ପୂଜା କରାଯାଏ ଏବଂ ସବୁ ବ୍ରତ ମଧ୍ୟରେ ଏହା ଶ୍ରେଷ୍ଠ ବ୍ରତ ବୋଲି ସମାଜରେ ବିବେଚିତ ହୁଏ । କୁନ୍ତଳାକୁମାରୀଙ୍କ 'କାଳିବୋହୂ' ଉପନ୍ୟାସରେ ବିଧବା ଲକ୍ଷ୍ମୀ ଏହି ବ୍ରତ ପାଳନ କରିଥିବା ଉଲ୍ଲେଖ ଅଛି ।

**ଭଣ୍ଡବାବାଜୀଙ୍କ କାର୍ଯ୍ୟକଳାପ**—ସମାଜରେ ଭଣ୍ଡବାବାଜୀ ଓ ମାତାମାନଙ୍କର ଅଭାବ ନଥିଲା । ଏମାନେ ସମାଜର ପ୍ରଭୂତ ଅନିଷ୍ଟ ସାଧନ କରୁଥିଲେ । 'କାଳିବୋହୂ' ଉପନ୍ୟାସରେ ବିଧବା ଲକ୍ଷ୍ମୀ ଯେତେ-ବେଳେ ମାତାଙ୍କ ନିକଟରେ ଅନ୍ୟ ଭଣ୍ଡ ତପସ୍ୱିମାନଙ୍କର କାର୍ଯ୍ୟକଳାପ ବର୍ଣ୍ଣନା କରିଛି, ସେତେବେଳେ ମାତା ଉତ୍ତର ଦେଇଛି—"ଯା ଏ ତ ପାପ-ନୁହେଁ, ବୃନ୍ଦାବନରେ ପାପ ବା' କେଉଁଠାକୁ ଆସିବ ? ଏ'ତ ଶ୍ରୀକୃଷ୍ଣଙ୍କ ଲୀଳାଭୂମି । ଏଠାରେ ପ୍ରତ୍ୟେକ ପୁରୁଷ ତ ଶ୍ରୀକୃଷ୍ଣଙ୍କ ଅଂଶ ସମ୍ଭୂତ, ଆଉ ପ୍ରତ୍ୟେକ ନାରୀ ତ ତାଙ୍କର ମହାହ୍ଲାଦିନୀ ଶକ୍ତି ଶ୍ରୀମତୀ ଶ୍ରୀରାଧିକାଙ୍କର ଅଂଶଜାତ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୧୦୩)

**ଶିକ୍ଷା**—ତତ୍କାଳୀନ ସମାଜରେ ଶିକ୍ଷାପ୍ରତି ବିଶେଷ ଗୁରୁତ୍ୱ ଦିଆଯାଉନଥିଲା । ନାରୀମାନେ ବିଦ୍ୟାଳାଭ କରିବାର ସୁବିଧା ଓ ସୁଯୋଗ ପାଉ ନ ଥିଲେ । ଘରର ଚାରିକାନ୍ଥ ମଧ୍ୟରେ ସେମାନେ ଆବଦ୍ଧ ରହୁଥିଲେ । ଅଶିକ୍ଷା, କୁଶିକ୍ଷା ଓ କୁସଂସ୍କାର ଭିତ୍ତ୍ୟାଦିରେ ବୁଡି ରହି ସେମାନେ ନିଜର ସମସ୍ତ ପ୍ରତିଭା ବିନାଶ କରୁଥିଲେ । ପୁରୁଷମାନଙ୍କ ମଧ୍ୟରୁ କେହି କେହି

ପାଶ୍ଚାତ୍ୟ ଶିକ୍ଷାଲାଭ କରୁଥିଲେ, ମାତ୍ର ପାଶ୍ଚାତ୍ୟ ସଭ୍ୟତାର ବାହ୍ୟାଡମ୍ବରରେ ଆକୃଷ୍ଟ ହୋଇ ସେମାନେ ନିଜର ଜାତୀୟତା ନଷ୍ଟ କରୁଥିଲେ ।

## ସାମାଜିକ ଜୀବନରେ ନୈତିକ ଓ ଧାର୍ମିକ ଭାବନା :

ଭାରତୀୟ ସମାଜ ବିଶେଷଭାବେ ବୈଧ ନୀତି ଓ ଧର୍ମଦ୍ୱାରା ନିୟନ୍ତ୍ରିତ । ବୈଦିକ ଯୁଗଠାରୁ ଏଯାବତ୍ ଶାସ୍ତ୍ର ଓ ପୁରାଣରେ ଅନେକ ନୀତି ଏବଂ ଧର୍ମ ଉପାଖ୍ୟାନ ଅଛି । ସଂସ୍କୃତ ମହାଭାରତରେ ଉଲ୍ଲେଖ ଅଛି— "ଯତୋଧର୍ମ ସ୍ତତୋଜୟ" ଅର୍ଥାତ୍ ଧର୍ମରୁ ହିଁ ଜୟ ହୁଏ । ବିପଦ ଆପଦରୁ ଧର୍ମ ମଧ୍ୟ ମଣିଷକୁ ରକ୍ଷା କରେ । ଗୀତାରେ ଭଗବାନ୍ ଶ୍ରୀକୃଷ୍ଣ କହିଛନ୍ତି— 'ସ୍ୱଳ୍ପମପ୍ୟସ୍ୟ ଧର୍ମସ୍ୟ ତ୍ରାୟତେ ମହତୋ ଭୟାତ୍ ।' ଅର୍ଥାତ୍ ଅଳ୍ପ ଧର୍ମ ହେଲେ ମଧ୍ୟ ବିପଦ ଭୟରୁ ତାହା ଉଦ୍ଧାର କରେ ।

ସମାଜର ସାଧାରଣ ଜନତା ପୁରାଣଶାସ୍ତ୍ରରେ ଧର୍ମଜ୍ଞାନ ଅର୍ଜନ କରିଥାନ୍ତି । ଏମାନେ ସାଧାରଣତଃ ଧର୍ମଭୀରୁ । ଧର୍ମ ଅଧର୍ମର ପରିଣତି ବିଷୟରେ ସେମାନେ ଅଧିକ ମାତ୍ରାରେ ସଚେତନ ଥା'ନ୍ତି । ପୁଣ୍ୟ ବା ଧର୍ମର ସର୍ବଦା ଜୟ ଏବଂ ପାପ ବା ଅଧର୍ମର ସର୍ବଦା କ୍ଷୟ ହୁଏ ବୋଲି ଲୋକେ ବିଶ୍ୱାସ କରନ୍ତି । ପାପୀ ତାର ଜୀବନକାଳ ମଧ୍ୟରେ ଅଶେଷ ଦୁଃଖ ଯନ୍ତ୍ରଣା ଭୋଗ କରେ ଏବଂ ରୋଗରେ ଘାଣ୍ଟିଚକଟି ହୋଇ ମୃତ୍ୟୁବରଣ କରେ । ମୃତ୍ୟୁ ପରେ ମଧ୍ୟ ସେ ନିଷ୍କୃତି ପାଏ ନାହିଁ । ଯମଦୁଆରେ ସେ ନାନା ଯନ୍ତ୍ରଣା ଭୋଗ କରେ ଓ ଶେଷରେ ନର୍କବାସ ହୁଏ । ଅଧର୍ମ ହେତୁ ରାବଣ ଓ ମହିଷାସୁର ନିଧନ ହେଲେ; ଧର୍ମ ପଥରେ ଥିବାରୁ ରାମଚନ୍ଦ୍ର ଓ ଯୁଧିଷ୍ଠିର ଯୁଦ୍ଧରେ ଜୟଲାଭ କଲେ । ଧର୍ମ-ଅଧର୍ମ, ପାପ-ପୁଣ୍ୟ ଓ ନୀତି-ଅନୀତିର ବିଚାର ଗଣଜୀବନର ଧାରାକୁ ନିୟନ୍ତ୍ରଣ କରେ । ଧର୍ମଜ୍ଞାନରୁ ସୃଷ୍ଟ ନୀତି ସେମାନଙ୍କ କର୍ତ୍ତବ୍ୟାକର୍ତ୍ତବ୍ୟ ବିଚାରର ନିୟାମକ ହୁଏ । ପିତା ମାତା, ଗୁରୁଜନ ଏବଂ ଅତିଥିମାନଙ୍କର ସେବା ପୂଜା କଲେ ଜୀବନରେ ସୁଫଳ ମିଳେ । ମିଥ୍ୟା କହିଲେ, ପରଦ୍ରବ୍ୟ ହରଣ କଲେ, ପରପ୍ରତି ଅସଦାଚରଣ କଲେ, ଅଧାର୍ମିକ କାର୍ଯ୍ୟରେ ଲିପ୍ତ ରହିଲେ ବ୍ୟକ୍ତିର ସର୍ବନାଶ ହୁଏ । ସୁତରାଂ ଦୃଢ଼ ଧର୍ମବିଶ୍ୱାସ ହିଁ ସାମାଜିକ ଜୀବନକୁ ମାର୍ଜିତ ଏବଂ ଶୃଙ୍ଖଳିତ କରେ ।

ସାମାଜିକ ଜୀବନରେ ଏହିପରି ନୈତିକ ଓ ଧାର୍ମିକ ଭାବନା କୁନ୍ତଳା କୁମାରୀଙ୍କ ଉପନ୍ୟାସରେ ପ୍ରତିଫଳିତ ହୋଇଥିବା ଲକ୍ଷ୍ୟ କରିଯାଏ । ତାଙ୍କର 'କାଳିବୋହୂ' ଉପନ୍ୟାସରେ ବାଲ୍ୟବିଧବା ଲକ୍ଷ୍ମୀ ନିଜର ଦୁର୍ଭାଗ୍ୟ ନିମିତ୍ତ ଯେତେବେଳେ ବିଧାତାପୁରୁଷକୁ ଦାୟୀ କରିଛି, ଈଶ୍ୱରଙ୍କର ନିନ୍ଦା କରିଛି ସେତେବେଳେ ତାର ସଙ୍ଗିନୀ ଦୁର୍ଲ୍ଲଭ ତାକୁ ବାଧାଦେଇ କହିଛି—"ସେମିତି କହନାଲେ—ଶାସ୍ତରେ କ'ଣ୍ ମିଛ ଲେଖିଛି ? ଦଅଁଦେବତା ଅମଙ୍ଗଳ କରିବେ ।" (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ପୃ-୮୭) 'ପରଶମଣି' ଉପନ୍ୟାସରେ ଲଳିତା ଈଶ୍ୱରଙ୍କ ଉପରେ ବିଶ୍ୱାସ କରିଛି । ଦୁଃଖରୁ ଉଦ୍ଧାର ପାଇବା ନିମିତ୍ତ ସେ ଭଗବାନଙ୍କୁ ଡାକିଛି । ହରିନାମ କୀର୍ତ୍ତନ କରିଛି ।

'ରଘୁଅରକ୍ଷିତ' ଉପନ୍ୟାସରେ ଅର୍ଥଲୋଭୀ ଚୌଧୁରୀ, ସ୍ତ୍ରୀ ସରସ୍ୱତୀର ହିତୋପଦେଶକୁ କର୍ଣ୍ଣପାତ କରିନାହିଁ । କନ୍ୟା ସୀତାକୁ ଅପାତ୍ରରେ ଦାନ କରିବାକୁ ମନସ୍ଥ କଲାବେଳେ ସରସ୍ୱତୀ ତାର ପ୍ରତିବାଦ କରିଛନ୍ତି । ହେଲେ ଫଳ କିଛି ହୋଇନାହିଁ । ଦୁଃଖ ଓ ହତାଶ ହୃଦୟରେ ସେ ତାରାମଣିଙ୍କୁ କହିଛନ୍ତି, "କ'ଣ କହିବି ଭଉଣୀ, ସ୍ୱାମୀ ସେ, ତାଙ୍କ ନିନ୍ଦା ମହାପାପ । କିନ୍ତୁ ଆଉ୍ କାଣିଲ, ସ୍ୱାମୀ କୁହନ୍ତି ସେ—। ତାଙ୍କୁ ବାଧାଦେଇ ପିତେଇ ନାମ ରୁକ୍ଷସ୍ୱରରେ କହିଲ, ଏ କ'ଣ ଚୋର ! କ'ଣ ବାଘୁଣୀ ହେଲୁଣି ! କ'ଣ ବୋଲି କ'ଣ କହୁଛୁ ?" (କୁନ୍ତଳାକୁମାରୀ ଗ୍ରନ୍ଥମାଳା ପୃ ୨୧୪) ସକଳ ଦୁଃଷ୍କର୍ମର ପ୍ରତୀକ 'ଶେଖର ଚୌଧୁରୀ' ଏତେ ଟଙ୍କା ରୋଜଗାର କରି ମଧ୍ୟ ଦିନଟିଏ ସୁଖରେ ବିତାଇ ପାରିନି । ସମସ୍ତଙ୍କର ଅନିଷ୍ଟ କରିଚାଲିଛି । ସେଥିପାଇଁ ଶେଷ ସମୟରେ ସେ ବାତରୋଗରେ ପୀଡ଼ିତହୋଇ ଅନୁତାପ ଅଗ୍ନିରେ ଦଗ୍ଧ ହୋଇ ମୃତ୍ୟୁକୁ ଅପେକ୍ଷା କରିଛି । ସ୍ୱଅର୍ଜିତ କର୍ମଫଳ ସେ ଭୋଗ କରିଛି ।

## ପଲ୍ଲୀ ପୋଖରୀ ତୁଠର ଦୃଶ୍ୟ ବର୍ଣ୍ଣନା :

ଓଡ଼ିଶାର ପ୍ରତିପଲ୍ଲୀରେ ଅନେକ ପୁଷ୍କରିଣୀ ଦୃଷ୍ଟିଗୋଚର ହୁଏ । ଏଗୁଡ଼ିକ ପଲ୍ଲୀର ଶ୍ରୀ ସମ୍ପଦ । ପଲ୍ଲୀଲଳନାଗଣ ଏହି ପୁଷ୍କରିଣୀମାନଙ୍କରେ ସ୍ନାନ କଲାବେଳେ ଗ୍ରାମର ବିଭିନ୍ନ କଥା ଏହିଠାରେ ଆଲୋଚନା କରିଥାନ୍ତି

ଯଥା—ଗାଁରେ କେଉଁ ଝିଅ ଭଲ । କିଏ କେଉଁଦିନ ଶାଶୁଘରକୁ ଯିବ, ଶାଶୂ ବୋହୂ ଭିତରେ କାହାର କଳିକଜିଆ ଲାଗିଛି, ବାହାଘରରେ କିଏ କେତେ ଯୌତୁକ ନେଇଛି ବା ଆଣିଛି । କାହା ସାଆନ୍ତାଣୀ ଭଲଲୋକ, କାହା ଘରେ କଣ ତିଅଣଶାଗ ହୋଇଛି, କେଉଁଦିନ କି ବ୍ରତ ହେବ··· ଇତ୍ୟାଦି । ଏହିଚର୍ଚ୍ଚାରେ ପୋଖରୀତୁଠ ସରଗରମ ହୋଇଉଠେ । ଗ୍ରାମର ପ୍ରତ୍ୟେକଟି ଖବର ଏହିଠାରୁ ସଂଗ୍ରହ କରାଯାଇପାରେ । ସାଧାରଣତଃ ଗ୍ରାମର ଏହି ପୋଖରୀତୁଠ ସମ୍ବାଦ-ସରବରାହ କେନ୍ଦ୍ରର କାର୍ଯ୍ୟ କରେ । ପଲ୍ଲୀ ପୋଖରୀତୁଠର ଏହି ନିଛକ ଦୃଶ୍ୟ ଔପନ୍ୟାସିକାଙ୍କୁ ବିଶେଷଭାବେ ଆକୃଷ୍ଟ କରିଛି । ଗ୍ରାମ୍ୟଜୀବନର ଏହି ସତ୍ୟକୁ ସେ ତାଙ୍କ ଉପନ୍ୟାସ ସମୂହରେ ସ୍ଥାନ ଦେଇଛନ୍ତି । 'ଭଗ୍ନଅରକ୍ଷିତ' ଉପନ୍ୟାସରେ ପୋଖରୀ ତୁଠର ବାସ୍ତବ ଦୃଶ୍ୟର ବର୍ଣ୍ଣନା ଦେବାକୁ ଯାଇ ସେ ଲେଖିଛନ୍ତି ---"ଦିନ ଦି ପହର । ପୋଖରୀ ତୁଠ କଣ ଚେକା ମାଙ୍କଡ଼ା ପଥର ଉପରେ ବସି ଗିନାଏ ହଳଦି ଯୋଗିଷତେଲ ନିଜ ଗୋଡ଼ହାତରେ ମାଲିସ୍ କରୁ କରୁ ଚମ୍ପାବୋଉ ଧରମୀ ଅଜାଙ୍କ ଉଦ୍ଦେଶ୍ୟ କରି କହିଲା—"କଲେ ନାନି, ଦିନ ଦି'ପହର ବେଳେ ଶାଗ କେବଳ ସକାଶେ ଏପଟ ସେପଟ ହେଉଛୁ । କ'ଣ ସେବେଇବାସ ସରିନାହିଁ ?"

"କାହିଁ ସରିବ ଲୋ ମା ! ଗରିବର ଦୁଃଖ କଥା ଭଲ ପଚାରୁଚୁ । ମୋର ତ 'ଅଇର ଖପର ବଇର ବାଆ ।' ବେଳ ବାରଘଡ଼ିକି ତାଙ୍କ ଘରେ ପାଇଟି ସାରିଲେ ତେବେ ମତେ ଛୁଟି, ପୁଣି ଖାଆଣ ପିଆଣ କଥା କିଏ ପଚାରେ ? ଘଣ୍ଟାରେ ତିନଟା ନ ବାଜୁଣୁ ହାଜର ହେବା କଥା । ଖଟି ଖଟି ହାଡ଼ରୁ ମାଉଁସ ଝଡ଼ିଲା ! ଟଙ୍କା ଗୁରିଟାକୁ କିଏ ଏତେ ଖଟିବଲୋ ! ସେଥିରେ ପୁଣି ସାଆନ୍ତାଣୀର ଆମର ନିତ କଟର କଟର । ତା' ଜ୍ବାଳାରେ ମାସକୁ କୋଡ଼ିଏ ଗୁଙ୍କର ବାହାରୁଛନ୍ତି । ମୁଁ ବୋଲି ତିନ ବର୍ଷ ବିତେଇଲିଣି । ତୋର ଭାଗ୍ୟ ଭାରି ଭଲ ଲୋ ।"

ଚମ୍ପାବୋଉ ମୁରୁକିହସା ଦେଇ ଅଣ୍ଟାଏ ପାଣିକି ଓହ୍ଲାଇଯାଇ ପଥର ଉପରେ ଗୋଡ଼ଥୋଇ ଘଷି ଘଷି କହିଲା—"ସତ କହୁଚୁ ଲୋ ନାନ, ଆମ ସାଆନ୍ତାଣୀ ପରି ହାବଟିଏ । ମୋ ହାତରେ କଷ୍ଟବୋଲି କ'ଣ ଜାଣେନା । ସେହିକ୍ଷଣି ଗାଳିଦେବେ, ସେଇକ୍ଷଣି ପିଠି ଆଉଁଷିବେ ।

ଚଟଡ଼ଇ ଛୁଆଟିର ପେଟ କଥା ଜାଣିବେ ! ଇମିତ ମଣିଷ କୋଟିକରେ ଗୋଟିଏ ।”

ଅପିଆ ମା’ ପଚାରୁଥିଲେ । ଦାନ୍ତକାଠି ଗ୍ରେବାଜ ଗ୍ରେବାଜ ଯେଉଁ ପାଣିରେ କୁଳ କଲ, ସେଇଠି ଛେପ ଖଙ୍କାର ମେଞ୍ଚାଏ ଫକାଇଦେଇ ପୁଣି କଳେ ପାଟିରେ ଘେନୁ ଘେନୁ ଚମ୍ପାବୋଉକୁ ପ୍ରଶ୍ନ କରିଲେ—“ତୋ ସାଆନ୍ତ ଝିଅ ସିଆ ନାଗିପର ବରଘର ହେଇଚ ? କେଉଁଠି, ଶୁଣେ ?”

—“କ’ଣ କହିବ ଲେ ସେ କଥା ! ତାଙ୍କୁ ଏକାହାକେ । ଏ ଦଶ ବର୍ଷର ଛୁଆଟା ? ବର କରିଛନ୍ତି ବାଷଠି ବର୍ଷର ବୁଢ଼ା ବୁରୁନ୍ଦାବନକୁ— ଭୁବନେଶ୍ୱର ଆଡ଼େ । ପୁଅକୁ ହଉ ହଉ ବାପକୁ ହବା କଥା ହେଲା ।”

ଏଥର ସ୍ତ୍ରୀ ଲୋକେ ମେଳ ହୋଇ ପଡ଼ିଲେ । ପ୍ରାୟ କୋଡ଼ିଏ ଜଣ ସ୍ତ୍ରୀ ଲୋକ—ବୃଦ୍ଧା, ମଧ୍ୟବୟସୀ, ଯୁବତୀ, ବାଳିକା, ଅଧିକାଂଶ ହାଡ଼ୁଆ କୂଳର । ଜଣେ ଦୁଇଜଣ ମହାନ୍ତିଆଣୀ ମିଶି ଗୋଟିଏ କ୍ଷୁଦ୍ର ସଭା ବସିଗଲା । କିଏ ବେକେ ପାଣିରେ, କିଏ ଅଣ୍ଟାଏ ପାଣିରେ, କିଏ କୂଳରେ, କିଏ ତୁଠରେ ନାନା ଅପରିଷ୍କୃତ ବସ୍ତ୍ରାଦି ଧୋଉଛନ୍ତି, କେହି କେହି ଦାନ୍ତ ଘଷୁଛନ୍ତି । ଜଣେ ଦି’ଜଣ ପିତଳ ଓ ଉସଖଡ଼ୁ ମୁଠା ମାଜିବାରେ ଲାଗିଛନ୍ତି; କିନ୍ତୁ ସମସ୍ତଙ୍କ କାନ ଚମ୍ପାବୋଉ କଥାରେ, ତାହାର ପ୍ରତ୍ୟେକ ବର୍ଣ୍ଣ ଯେପରି ମାଧୁର୍ଯ୍ୟପୂର୍ଣ୍ଣ । ବକ୍ତୃତା କରୁ କରୁ ଚମ୍ପାବୋଉକୁ ପ୍ରାୟ ଦି’ଟା ବାଜିଗଲା ।’ (କୁନ୍ତଳାକୁମାରୀ ଗ୍ରନ୍ଥାବଳୀ, ୨ୟ ଖଣ୍ଡ—ପୃ ୧୭୦)

ଫକୀରମୋହନଙ୍କ ପରି କୁନ୍ତଳାକୁମାରୀଙ୍କର ତୁଠର ଦୃଶ୍ୟ ବର୍ଣ୍ଣନା ଅତୀବ ବାସ୍ତବ ଓ ଜୀବନ୍ତ । କୁନ୍ତଳାକୁମାରୀଙ୍କ ଉପନ୍ୟାସ ସମୂହ ତଦାନୀନ୍ତନ ସମାଜର ନିଖୁଣ ପ୍ରତିଛବି ବହନ କରିଛି । ନିଜ ଉପନ୍ୟାସରେ ସମାଜର କେତେକ ସମସ୍ୟାର ଉତ୍ଥାପନ କରିବା ସଙ୍ଗେ ସଙ୍ଗେ ତା’ର ସମାଧାନର ପନ୍ଥା ମଧ୍ୟ ସେ ନିର୍ଦ୍ଧାରଣ କରିଛନ୍ତି । ତାଙ୍କ ସୂଚିତ ସମାଜରେ ଛୁଆଁ-ଅଛୁଆଁ ଭେଦଭାବ ନାହିଁ । ସମାଜର କୁସଂସ୍କାର ଓ ଅନ୍ଧବିଶ୍ୱାସକୁ ଦୂରେଇ ଦେଇ ଯେଉଁ ସୁସ୍ଥ ସୁନ୍ଦର ସମାଜର ପରିକଳ୍ପନା ସେ କରିଛନ୍ତି; ସେ ସମାଜର ଅଧିପତି ଅଚ୍ୟୁତ ମିଶ୍ର, ଦିବାକର ମିଶ୍ର ବା ଶେଖର ଗୌଡ଼ୀୟ ନୁହଁନ୍ତି, ତା’ର ପ୍ରଭୁ ହେଉଛନ୍ତି ସ୍ୱାମୀ ସଦାନନ୍ଦ, ଜମିଦାର କୃଷ୍ଣଚନ୍ଦ୍ର, ଲଛମନଜୀ, ଚନ୍ଦ୍ରୋଦୟ ଓ ଶାନ୍ତିଲତା ପ୍ରଭୃତି ଦେଶସେବୀଗଣ ।

**ଭାଷା ଓ ରଚନାଶୈଳୀ**—ଉପନ୍ୟାସର ଅନ୍ୟାନ୍ୟ ଉପାଦାନ ଯଥା—ବିଷୟବସ୍ତୁ, ଚରିତ୍ର ଓ ପରିବେଶ ପରି ଭାଷା ହେଉଛି ଏକ ଉପାଦାନ । ସ୍ରଷ୍ଟାପ୍ରାଣର ଚିନ୍ତା ଓ ଚେତନାକୁ ବହିଃରୂପ ପ୍ରଦାନ କରିବାର ଏହା ଏକମାତ୍ର ମାଧ୍ୟମ । ସୁତରାଂ ଭାଷା, ଭାବାନୁଭୂତି ଓ ବକ୍ତବ୍ୟର ଏକମାତ୍ର ବାହକ ।

ସାହିତ୍ୟରେ କେବଳ ଭାବପ୍ରକାଶ ଭାଷାର ଲକ୍ଷ୍ୟ ନୁହେଁ । ଏହାର ପ୍ରତିଟି ଶବ୍ଦ, ବାକ୍ୟଯୋଜନା, ଉକ୍ତି ମଧ୍ୟରେ ସ୍ରଷ୍ଟାର ପରିବ୍ୟାପ୍ତ ଚେତନା କ୍ରିୟାଶୀଳ ହୋଇଥାଏ । ତେଣୁ ଭାଷା ଶିଳ୍ପୀଭାବନାର ଏକ ଭାରବାହୀ ପଶୁ ନୁହେଁ । ଅଧିକନ୍ତୁ ଏହା ଶିଳ୍ପୀ ପ୍ରାଣର ଭାବନାରସରେ ସିକ୍ତ ଓ ଅଭିମନ୍ତ୍ରିତ । ଉପାଦାନର ଐଶ୍ୱର୍ଯ୍ୟ ଅନୁଭୂତିର ଗଭୀରତା ସତ୍ତ୍ୱେ ପ୍ରକାଶ ଭଙ୍ଗୀର ଚମତ୍କାରିତା ନଥିଲେ, କଳା ଅସୁନ୍ଦର ଓ ମୂଲ୍ୟହୀନ ହୋଇପଡେ । ଏହି ପ୍ରକାଶଭଙ୍ଗୀର ମନୋଜ୍ଞତା ନିର୍ଭର କରେ ଶବ୍ଦ ଚୟନ, ଭାଷା ବିନ୍ୟାସ, ବାକ୍ୟ ବିଶ୍ଳେଷଣ ଓ ସଂଳାପର ସୁସଂଯୋଜନା ଉପରେ । ରାଶିରାଶି ଶବ୍ଦ ମଧ୍ୟରୁ ଔପନ୍ୟାସିକ ନିର୍ବାଚନ କରେ, ସୁନ୍ଦର ଶବ୍ଦ; ଯେଉଁଥିରୁ ଭାବର ଜ୍ୟୋତି ନିର୍ଗତ ହୁଏ । ସମୟେ ସମୟେ ସାହିତ୍ୟିକ ଅନେକ ନୂତନ ଶବ୍ଦ ସୃଷ୍ଟି କରେ, ଯାହାର ଅର୍ଥ ଅଭିଧାନ ବହିର୍ଭୂତ, । ମାତ୍ର ତାହାକୁ ଅନୁଭବ କରି ହୁଏ, ଅବଧାରଣ କରି ହୁଏ । ସାହିତ୍ୟରେ ରସର ଝରଣା ବୁହାଇବା ପାଇଁ ସ୍ରଷ୍ଟା ନୂତନ ଶବ୍ଦସମ୍ଭାର ସୃଷ୍ଟି କରିବା ସଙ୍ଗେ ସଙ୍ଗେ ବାକ୍ୟଶୈଳୀର ପରିବର୍ତ୍ତନ ମଧ୍ୟ କରିଥାଏ । ଏହି ପ୍ରକାଶଭଙ୍ଗୀରେ ତାର ନିଜସ୍ୱ ଅଧିକ । ବିଷୟବସ୍ତୁର ସୁନିର୍ବାଚନ, ଚରିତ୍ରଚିତ୍ରଣ, ଜୀବନଦର୍ଶନ, ମର୍ମବାଣୀ, ଭାଷା ପ୍ରଭୃତିର ଅଭିବ୍ୟକ୍ତିରେ ଭିନ୍ନତା ହେତୁ ବିଭିନ୍ନ ସ୍ରଷ୍ଟାଙ୍କର ରଚନାଶୈଳୀରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ।

ଆଧୁନିକ ଓଡ଼ିଆ ଉପନ୍ୟାସର ଜନକ ଫକୀରମୋହନ ସେନାପତିଙ୍କ ଗଦ୍ୟଶୈଳୀ ତାଙ୍କ ପ୍ରତିଭାର ପରିଚୟ ପ୍ରଦାନ କରେ । ଆଞ୍ଚଳିକ ଭାଷା ସହିତ ଓଡ଼ିଶାର ପୁରପଲ୍ଲୀରେ ବାସ କରୁଥିବା ସମାଜର ମୂର୍ଖର ଭାଷା (ଗାଁଦାଣ୍ଡର ଭାଷା)କୁ ସେ ତାଙ୍କ ଉପନ୍ୟାସରେ ସ୍ଥାନ ଦେଇଛନ୍ତି । ବାସ୍ତବ ଓ ଜୀବନ୍ତ ସଂଳାପ ପ୍ରୟୋଗ କରି ଚରିତ୍ରଗୁଡ଼ିକୁ ସ୍ୱାଭାବିକ କରିବା ନିମନ୍ତେ ସେ ପ୍ରଯତ୍ନ କରିଛନ୍ତି । ସେହିପରି କୁନ୍ତଳାକୁମାରୀଙ୍କ ଉପନ୍ୟାସ ସମୂହରେ ସରଳ ସାବଲୀଳ ଭାଷାର ପ୍ରାବଲ୍ୟ ଦେଖିବାକୁ ମିଳେ । ଭାବଅନୁସାରୀ

ଭାଷାର ପ୍ରୟୋଗ କରି ସେ ଉପନ୍ୟାସକୁ ସୁବୋଧ କରାଇପାରିଛନ୍ତି । ଚରିତ୍ରାନୁଯାୟୀ ଭାଷାର ପ୍ରୟୋଗ କରି ସେ ସ୍ୱାଭାବିକତା ରକ୍ଷା କରିବାକୁ ଚେଷ୍ଟା କରିଛନ୍ତି । ସେଥିପାଇଁ ସେ ଖ୍ରୀଷ୍ଟିୟାନ ଧର୍ମାବଲମ୍ବୀ ବ୍ୟକ୍ତି ମୁଖରେ ବାଇବେଲର ଭାଷା ଦେଇଛନ୍ତି—"ପ୍ରଭୁ ତୁମକୁ ଗୁହାଳକୁ ଡାକୁଛନ୍ତି, ମୁଁ କପଟ ତୁମକୁ ଦୂର କରିବ ।" ପୁନଶ୍ଚ ନପଟ ଓଡ଼ିଆଣୀ ମୁହଁରେ ସେ କହିଛନ୍ତି—'ସେମିତି କହନାଲେ—ଶାସ୍ତ୍ରରେ କ'ଣ ମିଛ ଲେଖାଛି ?' ପାଶ୍ଚାତ୍ୟ ଶିକ୍ଷାପ୍ରାପ୍ତ ବ୍ୟକ୍ତି ଜମିଦାର ଦିବାକର ମିଶ୍ରଙ୍କ ମୁଖରେ ସେ ଓଡ଼ିଆ ମିଶା ଇଂରାଜୀ ଭାଷା ଦେଇଛନ୍ତି—'ଆମେ ଯଦି ଅନ୍ୟ ପ୍ରଭିନ୍ସକୁ ହେଲ୍ପ ନ କରିବୁ ଆମର ମଦର କଣ୍ଟ୍ରିକୁ ବେଳ ପଡ଼ିଲେ କିଏ ହେଲ୍ପ କରିବ ?' (କୁନ୍ତଳାକୁମାରୀ ଗ୍ରନ୍ଥମାଳା, ୨ୟ ଖଣ୍ଡ—ପୃ-୨୦୫)

କୁନ୍ତଳାକୁମାରୀଙ୍କ ଉପନ୍ୟାସରେ ଭାଷା ପରି ସଂଳାପ ମଧ୍ୟ ଚରିତ୍ରାନୁସାରୀ ହୋଇଥିବା ଲକ୍ଷ୍ୟ କରାଯାଏ । ଛୋଟମୁହଁରେ ବଡ଼କଥା ସେ କୁହାଇ ନାହାନ୍ତି କିମ୍ବା ଦୀର୍ଘ ସଂଳାପ ତାଙ୍କ ଉପନ୍ୟାସ ଶିଳ୍ପକୁ କ୍ଷୁଣ୍ଣ କରି ନାହିଁ । ଏହାସତ୍ତ୍ୱେ ତାଙ୍କ ଉପନ୍ୟାସର ସ୍ଥାନେ ସ୍ଥାନେ ଶବ୍ଦଗୁଡ଼ିକର ଅସମୀଚୀନ ବ୍ୟବହାର ଦୃଷ୍ଟିଗୋଚର ହୁଏ । ଯଥା—'ମାୟା ଲଜରେ ସଢ଼ିଗଲ, ଯଦି ସେଠି ଆଲୁଅ ଥାଆନ୍ତା ଶୁଭ୍ର ଦେଖିଥାନ୍ତା ଯେ ମାୟାର ମୁହଁ ଉପରେ କଳାକାଠ ପଡ଼ିଯାଇଥିଲା ।' 'କଳାକାଠ' ଶବ୍ଦଟିର ବ୍ୟବହାର ଏଠାରେ ଯଥୋଚିତ ହୋଇନାହିଁ । ଲଜରେ ଲୋକେ କଳାକାଠ ପଡ଼ିଯାନ୍ତି ନାହିଁ, ଭୟରେ ଲୋକେ କଳାକାଠ ପଡ଼ିଯାନ୍ତି । ସେହିପରି ତାଙ୍କ ଉପନ୍ୟାସରେ 'ସ୍ନେହ' ଓ 'ପ୍ରେମ' ମଧ୍ୟରେ ପାର୍ଥକ୍ୟ ପରିଲକ୍ଷିତ ହୁଏ ନାହିଁ । 'ରଘୁନାଥ ଯଦି ତା ଗର୍ଭରୁ ଜନ୍ମ ହୋଇଥାନ୍ତା, ତେବେ ସେ କ'ଣ [illegible] ପ୍ରେମ କରୁଥାନ୍ତା ?' ଖ୍ରୀଷ୍ଟିୟାନମାନଙ୍କ ଭାଷାରେ 'ସ୍ନେହ' ଓ 'ପ୍ରେମ' ମଧ୍ୟରେ କିଛି ପାର୍ଥକ୍ୟ ଦୃଷ୍ଟିଗୋଚର ହୁଏ ନାହିଁ । ମାତ୍ର ବିଶୁଦ୍ଧ ଓଡ଼ିଆ ଭାଷାରେ 'ସ୍ନେହ' ଓ 'ପ୍ରେମ' ମଧ୍ୟରେ ପ୍ରଭେଦ ରହିଛି । ସନ୍ତାନ ସନ୍ତତି ପ୍ରଭୃତି ଲଘୁଜନମାନଙ୍କୁ ସ୍ନେହ କରାଯାଏ । ସେହିପରି ସ୍ଥାନେ ସ୍ଥାନେ ବ୍ୟାକରଣଗତ ଭ୍ରମ ମଧ୍ୟ ଦୃଷ୍ଟିଗୋଚର ହୁଏ । ରଘୁନାଥ କହିଲା—'ମାୟା ! ଏଇ ଭଗବାନଙ୍କ ପରି ଆମର ମିଳନ । ମୁଁ ମହାକାଶ ଆଉ ତୁମେ ପୃଥ୍ୱୀବକ୍ଷା ନଦୀ । ଆମେ ଦୁହେଁ ଏପରି ମିଶିଛୁ ଯେ କେଉଁଠି ଜଣକର ଆରମ୍ଭ କେଉଁଠି ଶେଷ ବାରି ହେବନାହିଁ । କିଏ ଜାଣିଥିଲା ମୋ

କପାଳରେ ଏତେ ସୁଖ ଅଛୁ ବୋଲି ? ମୁଁ ପଗ ରଘୁ-ଅର୍ଜିତ ?' (କୁ: କୁ: ଗ: ୨ୟ ଖଣ୍ଡ—ପୃ-୩୦୯) ଯଦ୍ୟପି ଏହା ରଘୁନାଥ ଓ ମାୟା (ସ୍ୱାମୀ-ସ୍ତ୍ରୀ) ମଧ୍ୟରେ କଥୋପକଥନ ତଥାପି ଏହା ତୃତୀୟ ବ୍ୟକ୍ତି ନିକଟରେ ପ୍ରକାଶ କରିଛନ୍ତି ମନେହୁଏ । ଏହା ବ୍ୟକ୍ତିଗତ ସ୍ୱଦୀ ଓ ବଙ୍ଗଳାର ପ୍ରଭାବ ଉପନ୍ୟାସର ସ୍ଥାନେ ସ୍ଥାନେ ଉପଲବ୍ଧ ହୁଏ ।

**ଜାତୀୟତା**—କୁନ୍ତଳାକୁମାରୀଙ୍କ ସାହିତ୍ୟ ପ୍ରାଦେଶିକତା ଦୋଷ-ଦୁଷ୍ଟ ନୁହେଁ । ଔପନ୍ୟାସିକାଙ୍କର ସବୁଠାରୁ ବଡ଼ିଷ୍ଟ ଦାନ ହେଉଛି ତାଙ୍କର ସର୍ବଭାରତୀୟ ଦୃଷ୍ଟି । ସେ ଓଡ଼ିଶାରେ ଜନ୍ମ ହୋଇଛନ୍ତି । ଓଡ଼ିଶାର ପାଣି ପବନ ତାଙ୍କୁ ନୂତନ ଜୀବନ ଦେଇଛି । ଓଡ଼ିଶାର ନଦ ନଦୀ ଗିରିପ୍ରାନ୍ତର ଦେବଦେବୀ ସର୍ବୋପରି ଓଡ଼ିଶାବାସୀଙ୍କୁ ସେ ପ୍ରାଣଭରି ଭଲପାଉଛନ୍ତି । ତଥାପି ଏହି ଭଲପାଇବା ତାଙ୍କୁ ସମଗ୍ର ଜଗତକୁ ଭଲ ପାଇବାରୁ ବଞ୍ଚିତ କରି ରଖିନାହିଁ । ଓଡ଼ିଆକୁ ବାହାରେ ପରିଚିତ କରାଇବାକୁ ସେ ଆପ୍ରାଣ ଚେଷ୍ଟା କରିଛନ୍ତି । ଓଡ଼ିଶାର ଶିଳ୍ପ, ଓଡ଼ିଶାର କାରିଗରୀକୁ ସେ ବାହାରେ ଦେଖାଇଦେବାକୁ ଚାହିଁଛନ୍ତି । ଓଡ଼ିଶାର ଗୌରବମୟ ଐତିହ୍ୟକୁ ସ୍ମରଣ କରି ସେ ମନରେ ଖେଦ ଅନୁଭବ କରିଅଛନ୍ତି । ଓଡ଼ିଆଙ୍କୁ ସେ କଲିକତାର ଗଳିରେ, ରେଙ୍ଗୁନର କଳକାରଖାନାରେ କୁଲିଭାବେ ଓ ଆସାମର ଚା' ବଗିଚାରେ ଶ୍ରମିକ ଭାବେ କାର୍ଯ୍ୟ କରୁଥିବାର ଦେଖିଥିଲେ । ତାର ଓଡ଼ିଆର ଏହି ଅଧଃପତନ ଦେଖି ସେ ମର୍ମାନ୍ତିକ ଯନ୍ତ୍ରଣା ଅନୁଭବ କରିଥିଲେ ।

ତାଙ୍କର ଏହି ଭାବନା ରୂପ ନେଇଛି 'କାଳିବୋହୂ' ଉପନ୍ୟାସରେ । 'ଓଡ଼ିଶା ଶ୍ମଶାନ ତୁଲ୍ୟ ହେବାକୁ ବସିଲା । ଉପେନ୍ଦ୍ର, ଯଯାତି, ବୀର, ଅନଙ୍ଗଭୀମଙ୍କ ଦେଶରେ କେବଳ 'ହାଅନ୍ନ ! ହାଅନ୍ନ !' ଶୁଭିଲା । ସ୍ୱଦେଶରେ ଓଡ଼ିଆ ହେଲେ କୁଲିଜାତି । କଳିଙ୍ଗର ଗୌରବମୟ ନାମ ପରିବର୍ତ୍ତେ ତାଙ୍କର ପୂର୍ବ ପୁରୁଷ ବର୍ଜିତ ଜାଗ୍ରା, ବାଲି, ବୋର୍ଣ୍ଣିଓ, ଶ୍ୟାମ, ଚିନାଙ୍ଗରେ ଓଡ଼ିଆହେଲେ ରେଲ୍ ଲାଇନରେ କୁଲି, କଳକାରଖାନାରେ ମଜୁରିଆ, କଲିକତାରେ ହେଲେ ବାବୁଘରେ ପୂଜାରୀ, ନୋହିଲେ ଷ୍ଟେସନ ବା ଷ୍ଟିମର ଘାଟରେ ମୋଟିଆ ।' (କୁ. କୁ. ଗ୍ର. ୨ୟ ଖଣ୍ଡ—ପୃ-୮୮) ଓଡ଼ିଆମାନଙ୍କର ସୁପ୍ତଚେତନାକୁ ଜାଗ୍ରତ କରିବା ନିମିତ୍ତ ସେ ନାମର ଆଦ୍ୟରେ 'ଖାରଶ୍ରୀ' ଉପାଧି ଯୋଡ଼ିବା ପାଇଁ ଆହ୍ୱାନ ଦେଇଥିଲେ ।

ଓଡ଼ିଶା ବାହାରେ ସୁଦୂର କଲିକତାରେ ଓଡ଼ିଆକୁ ପ୍ରତିଷ୍ଠିତ କରିବାକୁ ସେ ଚାହିଁଥିଲେ । ତେଣୁ ଉପନ୍ୟାସରେ ସୁବିଧା ପାଇଲାକ୍ଷଣି ସେ ଓଡ଼ିଶାର ଚାଲିଚଳଣି, ଢଙ୍ଗରଙ୍ଗ, ଖିଆପିଆ ପ୍ରଭୃତିର ଭୂରିଭୂରି ପ୍ରଶଂସା କରିଛନ୍ତି । ରଘୁ ଅରକ୍ଷିତ ଉପନ୍ୟାସରେ ଜ୍ୟୋତିଷ ଡାକ୍ତର ମୁହଁରେ ସେ କହିଛନ୍ତି—"ଓଡ଼ିଆଝିଅଙ୍କଠୁ ଆଉ କିଏ ଭଲ ରାନ୍ଧେ ? ସତ କହୁଛି ଭାଇ, ତୁମ ଦେଶର ଯେଉଁ ମଣ୍ଡା, କାକରା, ବିଶେଷତଃ ଯେଉଁ ଚୁଡ଼ାଘସା, ପୋଡ଼ପିଠା ମୁଁ ପୁରୀରେ ଥିଲାବେଳେ ଖାଇଥିଲି, 'କେକ୍' 'ବିସ୍କୁଟ' କାହିଁକି ତା ସଙ୍ଗେ ସମାନ ହେବ ? ଓଡ଼ିଶା ବ୍ରାହ୍ମଣ ପରିବାରର କନ୍ୟାମାନେ ଯେପରି ରାନ୍ଧନ୍ତି, ସେହିପରି ଅତିଥିପ୍ରିୟ । ଭାରତର ଅନ୍ୟତ୍ର ଏପରି ମୁଁ ଦେଖିନାହିଁ । (କୁ. କୁ. ଗ୍ର. ୨ୟ ଖଣ୍ଡ—ପୃ-୨୮)

ଓଡ଼ିଶାର ଅତୀତ ଗୌରବକୁ ସ୍ମରଣ କରାଇ ଓଡ଼ିଆମାନଙ୍କୁ ଜାତିପ୍ରୀତି ମନ୍ତ୍ରରେ ଦୀକ୍ଷିତ କରିବା ସଙ୍ଗେ ସଙ୍ଗେ ପତିତଜାତିର ଉଦ୍ଧାର ନିମିତ୍ତ ସେ ଚେଷ୍ଟା ଚଳାଇଥିଲେ । ଉପନ୍ୟାସରେ ଅନେକଗୁଡ଼ିଏ ସମସ୍ୟାର ଉତ୍ଥାପନ କରି ତାର ସମାଧାନର ପନ୍ଥା ସେ ସୂଚେଇ ଦେଇଛନ୍ତି ।

ଅନେକ ସ୍ଥଳରେ ଔପନ୍ୟାସିକା ଦେଶର ଗାରିମାକୁ ଦେଶ ବାହାରେ ପ୍ରକାଶ କରିବା ନିମିତ୍ତ ଉଦ୍‌ଗ୍ରୀବ ହୋଇ ଉଠିଛନ୍ତି । ଏହାଦ୍ୱାରା ତାଙ୍କର ଦେଶପ୍ରୀତି ଚରିତାର୍ଥ ହୋଇଛି ସତ୍ୟ, ମାତ୍ର ଉପନ୍ୟାସ ଶିଳ୍ପରେ ବ୍ୟାଘାତ ଘଟିଛି । କେବଳ ଓଡ଼ିଶା ନୁହେଁ ସୁଦୁର ବର୍ମାର ଚାଲିଚଳନ, ନିଷ୍ଠା, ସଭ୍ୟତା ସଂସ୍କୃତିକୁ ସେ ତାଙ୍କ ଉପନ୍ୟାସ ସମୂହରେ ଉପସ୍ଥାପନା କରିବାକୁ ଆଗେଇ ଆସିଛନ୍ତି ।

**ହାସ୍ୟରସ**—ହାସ୍ୟରସ ଦୃଷ୍ଟିରୁ କୁନ୍ତଳାକୁମାରୀ ତାଙ୍କର ପୂର୍ବସୂରୀ ଫକୀରମୋହନଙ୍କୁ ଅନୁକରଣ କରିଥିବା ଜଣାଯାଏ । ସରଳ ହାସ୍ୟରସ ମିଶ୍ରିତ ବ୍ୟଙ୍ଗ ବିଦ୍ରୂପ କରି ବ୍ୟକ୍ତି ତଥା ସମାଜ-ଜୀବନକୁ ଶୃଙ୍ଖଳିତ କରିବା ତାଙ୍କର ଉଦ୍ଦେଶ୍ୟ ଥିଲା । ସୁତରାଂ ତାଙ୍କ ଉପନ୍ୟାସର ଅନେକତ୍ର ସେ ଏହି ହାସ୍ୟରସର ଅବତାରଣା କରିଅଛନ୍ତି । 'ନଅତୁଣ୍ଡୀ' ଉପନ୍ୟାସରେ ମୂର୍ଖ ହୁଣ୍ଡା ଫକୀରର ଅସଙ୍ଗତ କଥାବାର୍ତ୍ତା ଶୁଣି ପାଠକ ହାସ୍ୟ ସମ୍ବରଣ କରିପାରେ ନାହିଁ । ମାତ୍ର ଏହି ହାସ୍ୟ ମଧ୍ୟରେ ଅତ୍ୟାଚାରୀ ବାଇଧର ଓ ତା ଭଉଣୀର ସମସ୍ତ କୁକର୍ମ ବର୍ଣ୍ଣନା କରାଯାଇଛି । ସେହିପରି ଶେଖର ରୌଦ୍ରଧରଙ୍କୁ ବ୍ୟଙ୍ଗ କରି ଔପନ୍ୟାସିକା ଲେଖିଛନ୍ତି—'ନତ ନତ ସନ୍ଧ୍ୟା

ପୂଜା ନ କରି ପାଣିଛୁଅଁନ୍ତି ନାହିଁ, କପାଳରେ ଗୁଣ୍ଡରେ ପଞ୍ଚାଏ ପଞ୍ଚାଏ ତିଳକ, ଚନ୍ଦନ ଟିକା ଲାଗିଥାନ୍ତି । କଥାପଦକେ ହରିଶିବ ।' (କୁ: କୁ: ଗ୍ର: ୨ୟ ଖଣ୍ଡ—ପୃ-୧୬୧)

ଉପନ୍ୟାସ ଶିଳ୍ପରେ ତ୍ରୁଟି—କୁନ୍ତଳାକୁମାରୀଙ୍କ ଉପନ୍ୟାସର ଅନେକ ସ୍ଥଳରେ ନୈତିକ ବିଚାର (Poetic Justice) ପରିଲକ୍ଷିତ ହୁଏନାହିଁ । ଫକୀର ମୋହନଙ୍କ ଉପନ୍ୟାସରେ ନୀତି-ଅନୀତି, ଧର୍ମ-ଅଧର୍ମ, ପାପ-ପୁଣ୍ୟର ବିଚାର ରହିଛି । ପାପୀ, ପାପର ଦଣ୍ଡ ପାଏ, ନର୍କଗାମୀ ହୁଏ । ପୁଣ୍ୟବାନ ସୁଫଳ ପାଏ—ମୃତ୍ୟୁ ପରେ ସ୍ୱର୍ଗଗାମୀ ହୁଏ । ଯୁଗେ ଯୁଗେ ପାପର କ୍ଷୟ ଓ ପୁଣ୍ୟର ଜୟ ହୋଇ ଆସିଛି—ଏହା ଫକୀରମୋହନଙ୍କ ଉପନ୍ୟାସର ମର୍ମବାଣୀ, କୁନ୍ତଳାକୁମାରୀଙ୍କ ଉପନ୍ୟାସରେ କେତୋଟି ଚରିତ୍ର ଯଥା—'ଶେଖର ରାୟ ଚୌଧୁରୀ' ଓ 'ବଂଶୀଧର'ଙ୍କୁ ଛାଡ଼ିଦେଲେ ଅନ୍ୟ ଚରିତ୍ରଗୁଡ଼ିକରେ ଏହି ନ୍ୟାୟ ଅନ୍ୟାୟର ବିଚାର ସେ କରି ନାହାଁନ୍ତି । ରାମଚନ୍ଦ୍ର ମଙ୍ଗରାଜ ପରି ଶେଖର ରାୟ ଚୌଧୁରୀ ତାର ବାର୍ଦ୍ଧକ୍ୟାବସ୍ଥାରେ ନିଜର କୃତକର୍ମ ପାଇଁ ଅନୁତାପ କରିଛି । ରୋଗ ଯନ୍ତ୍ରଣାରେ ଛଟପଟ ହୋଇ ସେ ଅଶେଷ ଦୁଃଖ ଭୋଗକରିଛି । ସେମାନଙ୍କର ପରିଣତି ଅତ୍ୟନ୍ତ ସ୍ୱାଭାବିକ ହୋଇଛି । ଯୂଥିକା ଓ 'ଫୁଲମଞ୍ଜରୀ' ପ୍ରଭୃତି କୁଳଟା ପରିଣତିରେ କିଛି ଦଣ୍ଡ ପାଇନାହାଁନ୍ତି । ଯୂଥିକା ଫେରାର୍ ହୋଇଛି । ଫୁଲମଞ୍ଜରୀ ଡାକ୍ତର ତାରକ୍ ସେନ୍‌ଙ୍କୁ ବିବାହ କରି ସତୀସାଧ୍ୱୀ ସାଜି ସୁଖମୟ ଦାମ୍ପତ୍ୟ ଜୀବନ ଉପଭୋଗ କରିଛି । ଅନ୍ୟାୟ ଓ ପାପ କରି ସେ କିଛି ଦଣ୍ଡ ପାଇନାହିଁ । ଏହି ଚରିତ୍ରଟିର ପରିଣତି ଅତ୍ୟନ୍ତ ଅସ୍ୱାଭାବିକ ହୋଇଛି । ଡାକ୍ତର ସେନ୍ ଏହି ଧୂଳି ଧୂସରିତ ସଂସାରର ଜଣେ ସାଧାରଣ ମାନବ ନୁହେଁ, ସେ ଏକ ଅତିମାନବୀୟ ଚରିତ୍ର—ସ୍ୱର୍ଗର ଦେବତା ପରି ପ୍ରତୀୟମାନ ହୋଇଛି ।

ସେହିପରି ଗାନ୍ଧୀଦର୍ଶନରେ ଅନୁପ୍ରାଣିତ ହୋଇ କୁନ୍ତଳାକୁମାରୀ 'ନଅକୁଣ୍ଡୀ'ର ଜମିଦାର କୃଷ୍ଣଚନ୍ଦ୍ରଙ୍କୁ ସୃଷ୍ଟି କରିଅଛନ୍ତି । କୃଷ୍ଣଚନ୍ଦ୍ର ଏକ ଆଦର୍ଶ ଚରିତ୍ର । ସେ ପ୍ରଜାମାନଙ୍କ ମଧ୍ୟରେ ଗାନ୍ଧୀ ବାଣୀକୁ ପ୍ରଚାର କରିଛନ୍ତି । ସ୍ୱଦେଶୀ ହେବାପାଇଁ ପ୍ରେରଣା ଦେଇଛନ୍ତି । ତାଙ୍କର ଚେଷ୍ଟାରେ ଘରେ ଘରେ ଅରଟ ଗୁଞ୍ଜରିଛି, ଲୋକଙ୍କ ମଧ୍ୟରେ ଛୁଆଁ ଅଛୁଆଁ ଭେଦଭାବ ରହିନାହିଁ । ସମସ୍ତେ ମିଳିମିଶି ଚଳନ୍ତି—ଏହି ଆଦର୍ଶକୁ ତତ୍କାଳୀନ

ପାରମ୍ପରିକ ସମାଜ କେତେଦୂର ଗ୍ରହଣ କରିଛି ତାହା ଚିନ୍ତା କରିବାର ବିଷୟ । କୁନ୍ତଳାକୁମାରୀଙ୍କ ଉପନ୍ୟାସ ରଚନାର ଅର୍ଦ୍ଧଶତାବ୍ଦୀ ବିତି-ଯାଇଥିଲେ ମଧ୍ୟ ଆଜ ସମାଜ ଛୁଆଁ ଅଛୁଆଁ ଭେଦଭାବ ସମ୍ପୂର୍ଣ୍ଣରୂପେ ଲୋପପାଇନାହିଁ, ସରକାରଙ୍କ ଚେଷ୍ଟାରେ ଯଦ୍ୟପି ଏହା କିଛି ପରିମାଣରେ ସମାଜରୁ ଲୋପପାଇଛି ତଥାପି ଏହାର ସମ୍ପୂର୍ଣ୍ଣ ବିଲୋପ ଘଟିନାହିଁ । ଲୋକଙ୍କ ମନରେ ଏହି ଅସ୍ପୃଶ୍ୟ ଜାତିପ୍ରତି କେମିତି ଏକ ଘୃଣାଭାବ ରହି-ଯାଇଛି । ଆଜିର ସମାଜରେ ଏହା ଯଦି ଅନୁଭବର ବିଷୟ ତେବେ ସେ ସମୟର ସମାଜରେ ଏହା କେତେଦୂର ସମ୍ଭବି ଥିଲା ବିଚାର କରିବାର କଥା । ସେହିପରି 'କାଳବୋଧୁ' ଉପନ୍ୟାସର ସ୍ୱାମୀ ସଦାନନ୍ଦ ଚରିତ୍ର । ଏହି ଚରିତ୍ର ସମ୍ପୂର୍ଣ୍ଣ ଆଦର୍ଶ ଉପରେ ପ୍ରତିଷ୍ଠିତ । ସୁତରାଂ ଏଗୁଡ଼ିକ ବାସ୍ତବ ଜଗତର ବୋଲି ପ୍ରତୀୟମାନ ହୁଅନ୍ତି ନାହିଁ ।

ଔପନ୍ୟାସିକା କୁନ୍ତଳାକୁମାରୀ ଜଣେ ସଂସ୍କାରକାମୀ ନାରୀ । ପାରମ୍ପରିକ ସମାଜରେ ପୂରିରହିଥିବା କୁସଂସ୍କାର ଓ ଅନ୍ଧବିଶ୍ୱାସର ମୂଳୋ-ତ୍ପାଟନ କରି ଏକ ଆଦର୍ଶ ସମାଜ ପ୍ରତିଷ୍ଠା କରିବା ନିମିତ୍ତ ସେ ପ୍ରୟାସୀ ହୋଇଥିଲେ । ସେହି ଆଦର୍ଶ ସମାଜର ପ୍ରତିଷ୍ଠାତା ହେଉଛନ୍ତି—ସଦାନନ୍ଦ-ପରି ସଂସ୍କାରକାମୀ ପୁରୁଷ, ମାତ୍ର ସେମାନଙ୍କର କାର୍ଯ୍ୟକଳାପ ଓ ଚିନ୍ତା-ଧାରାକୁ ଗ୍ରହଣ କରିବାକୁ ସେ ସମୟର ସମାଜ କେତେଦୂର ସମର୍ଥ ତାହା ବିଚାର୍ଯ୍ୟ । ସେହିପରି ରଘୁନାଥ ଚରିତ୍ର । ସେ ଭାଗ୍ୟଦେବୀ ହସ୍ତର କ୍ରୀଡ଼ନକ ସାଜି ସ୍ୱାଭାବିକତାକୁ ହରାଇ ବସିଛି ।

କୁନ୍ତଳାକୁମାରୀଙ୍କ ଉପନ୍ୟାସ ସମୂହର ଉପସଂହାର କଳାସମ୍ମତ ହୋଇନାହିଁ । "ବର୍ତ୍ତମାନ କାଳବୋଧୁ ସମସ୍ତଙ୍କଠାରୁ ମେଲାଣି ମାଗୁଛି । ତାକୁ ବିଧାତା କାଳୀକରି ସୃଷ୍ଟି କରି ଅଛନ୍ତି । ଆଶାକରେ ପାଠକ ପାଠିକା-ବର୍ଗ ଗାଳିଦ୍ୱାରା ତାକୁ ଅଧିକ କାଳି କରିବେ ନାହିଁ ।" କିମ୍ବା "ମୋ କଥାଟି ସରିଲା ଫୁଲଗଛଟି ମଲା...ଇତ୍ୟାଦି ବୁଢ଼ୀମା କାହାଣୀର ପରି-ସମାପ୍ତି ପରି ହୋଇଛି । ଏଥିରୁ ଲେଖିକାଙ୍କ ପ୍ରାଚୀନ ଗଳ୍ପକଥନ ଭଙ୍ଗୀ ପ୍ରତି ଆକର୍ଷଣ ଥିବା ସୂଚୀତ ହୁଏ ।

ଆକାରଗତ କ୍ଷୁଦ୍ରତା ହେତୁ କେତେକ ସମାଲୋଚକ ମତପ୍ରଦାନ କରନ୍ତି ଯେ କୁନ୍ତଳାକୁମାରୀଙ୍କ ଉପନ୍ୟାସଗୁଡ଼ିକ କ୍ଷୁଦ୍ରଗଳ୍ପ ଶ୍ରେଣୀର । ଏଭଳି ମତର ପଶ୍ଚାତ୍‌ରେ ସେପରି କିଛି ସତ୍ୟତା ଥିଲାଭଳି ମନେ ହୁଏ

ନାହିଁ । କାରଣ କ୍ଷୁଦ୍ରଗଳ୍ପ ଓ ଉପନ୍ୟାସ ମଧ୍ୟରେ କେବଳ ଆକାରଗତ ପାର୍ଥକ୍ୟ ନୁହେଁ, ଗୁଣଗତ ପ୍ରଭେଦ ମଧ୍ୟ ବିଦ୍ୟମାନ । ଆଧୁନିକ କ୍ଷୁଦ୍ରଗଳ୍ପ ମଣିଷର ବ୍ୟାପକ ଜୀବନ ବୋଧର ଏକ ଖଣ୍ଡିତ ଭାବମୂର୍ତ୍ତି । ଜୀବନର ଏକ ଶ୍ରେଷ୍ଠ ଘଟଣାକୁ ଉପଜୀବ୍ୟ କରି ଏହା ବିକାଶଲାଭ କରିଥାଏ । ଏଥିରେ ମୁହୂର୍ତ୍ତକର ସ୍ପନ୍ଦନକୁ ଚିରନ୍ତନ ମୂଲ୍ୟବୋଧ ଦେବା ନିମିତ୍ତ ପ୍ରୟାସ ହୋଇ-ଥାଏ । ଫଳରେ ଏହାର ଆୟତନ ଓ ପରିସର ମଧ୍ୟ ସଂକୁଚିତ ହୋଇଥାଏ । ଅବଶ୍ୟ ଏହାର ଆୟତନରେ ସେପରି କିଛି ଧରାବନ୍ଧା ନୀତିନିୟମ ନାହିଁ । ସମୟେ ସମୟେ ଏହା ମଧ୍ୟ ଦୀର୍ଘରୂପ ଧାରଣ କରିଥାଏ । ଉପନ୍ୟାସ ମଣିଷର ସମଗ୍ର ଜୀବନକୁ ପ୍ରକାଶିତ କରିଥାଏ । ମଣିଷର ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ସମସ୍ତ ଘଟଣାକୁ ଯଥାଯଥ ଭାବରେ ଏହା ନିଜ କଳେବରରେ ସ୍ଥାନ ଦେଇଥାଏ । ଏଥିରେ ସ୍ଥାନ ପାଇଥିବା ଅନେକ ଘଟଣା, ଚରିତ୍ର ଓ ବିଭାବ ଏକ ସୂତ୍ରରେ ଆବଦ୍ଧ । ସୁତରାଂ ଏ ଦୃଷ୍ଟିରୁ ବିଚାରକଲେ କୁନ୍ତଳା-କୁମାରୀଙ୍କ ଉପନ୍ୟାସ ସମୂହ କ୍ଷୁଦ୍ରଗଳ୍ପ ପର୍ଯ୍ୟାୟଭୁକ୍ତ ନୁହେଁ । ଉପନ୍ୟାସର ବିଷୟବସ୍ତୁ, ଚରିତ୍ର ଚିତ୍ରଣ ଦୃଷ୍ଟିରୁ ଏଥିରେ ନୂତନତା ନ ଥାଇପାରେ ମାତ୍ର ଦ୍ୱନ୍ଦ୍ୱ, ସଂଘାତ ଓ ମର୍ମବାଣୀ ଦୃଷ୍ଟିରୁ ଏଗୁଡ଼ିକ ଏକ ଏକ ସାର୍ଥକ ସୃଷ୍ଟି ।

ସାମ୍ପ୍ରତିକ ଉପନ୍ୟାସ ସହିତ କୁନ୍ତଳାକୁମାରୀଙ୍କ ଉପନ୍ୟାସଗୁଡ଼ିକୁ ତୁଳନା କଲେ ନିରାଶ ହେବାକୁ ପଡ଼େ । ଏହା ଉଚ୍ଚାଙ୍ଗ ଉପନ୍ୟାସ ନୁହେଁ, ମାତ୍ର ଅନ୍ଧକାର ରଜନୀରେ ଜୁଳୁଜୁଳିଆ ପୋକ ଆଲୁଅର ଯଥେଷ୍ଟ ମୂଲ୍ୟ ଥିଲା ପରି ଓଡ଼ିଆ ସାହିତ୍ୟ-ଆକାଶର ଅମା ଅନ୍ଧକାରରେ ଏହି ଉଜ୍ଜଳ ଦୀପ୍ତ ନାରୀପ୍ରତିଭାର ଆବିର୍ଭାବ ଘଟିଥିଲା । ସେ ସମୟରେ କେତୋଟି ଆଙ୍ଗୁଠି ଗଣନ୍ତା ଉପନ୍ୟାସକୁ ବାଦ ଦେଲେ ଓଡ଼ିଆ ସାହିତ୍ୟରେ ଆଉ ସେପରି ବିଶିଷ୍ଟ ଉପନ୍ୟାସ ସୃଷ୍ଟି ହୋଇ ନଥିଲା । ଔପନ୍ୟାସିକାଙ୍କ 'ନଅଗୁଣ୍ଡୀ' ଓ 'କାଳିବୋହୂ' ଉପନ୍ୟାସ ପ୍ରେସରୁ ବାହାରିବା ସଙ୍ଗେ-ସଙ୍ଗେ ଅର୍ଦ୍ଧାଧିକ ବିକ୍ରୀ ହୋଇଯାଇଥିଲା ବୋଲି କୁନ୍ତଳାକୁମାରୀ ନିଜେ ଉଲ୍ଲେଖ କରିଅଛନ୍ତି । ସୁତରାଂ କୁନ୍ତଳାକୁମାରୀଙ୍କ ଉପନ୍ୟାସର ଚିରନ୍ତନ ମୂଲ୍ୟ ନଥାଇପାରେ ମାତ୍ର ଏଗୁଡ଼ିକର ଯଥେଷ୍ଟ ସାମୟିକ ମୂଲ୍ୟ ଥିଲା— ଏହା ସ୍ୱୀକାର୍ଯ୍ୟ ।

କୁନ୍ତଳାକୁମାରୀଙ୍କ ଉପନ୍ୟାସ ସମୂହ ଉଦ୍ଦେଶ୍ୟମୂଳକ ରଚନା ଏହା ପୂର୍ବରୁ ସୂଚିତ । ସମାଜରୁ ଅନ୍ଧବିଶ୍ୱାସ ଓ କୁସଂସ୍କାର ଦୂର କରିବା,

ନାରୀଙ୍କୁ ତାର ନ୍ୟାଯ୍ୟ ଅଧିକାର ଦେଇ ଶିକ୍ଷାର ଆଲୋକରେ ଆଲୋକିତ କରିବା, ଦେଶବାସୀଙ୍କୁ ଜାତି ପ୍ରେମରେ ଉଦବୁଦ୍ଧ କରିବା ଆଦି ଲକ୍ଷ୍ୟନେଇ ସେ ଲେଖନୀ ଚାଳନା କରିଥିଲେ । ସମାଜର ବହିର୍ମୁଖୀ ଅବହେଳିତ ଦିଗପ୍ରତି ସେ ସଚେତନ ଥିଲେ । ଏଥିପାଇଁ ଉପନ୍ୟାସର ନୈତିକ ମୂଲ୍ୟ ହ୍ରାସ ହୋଇଥିବା ଲକ୍ଷ୍ୟ କରାଯାଏ ।

ଶେଷରେ ଏତିକି କୁହାଯାଇପାରେ ଯେ କୁନ୍ତଳାକୁମାରୀଙ୍କ ପ୍ରତିଭାର ଉନ୍ମେଷକାଳରେ ଏହି ଉପନ୍ୟାସଗୁଡ଼ିକର ସୃଷ୍ଟି ହେତୁ ଏଗୁଡ଼ିକ ତାଙ୍କର କଞ୍ଚାହସ୍ତର କୀର୍ତ୍ତି । ଅପରିପକ୍ୱ ବୟସରେ ଅପୂର୍ଣ୍ଣ ଅଭିଜ୍ଞତା ନେଇ ସେ ଯଦି ଏପରି ଉପନ୍ୟାସ ସୃଷ୍ଟି କରି ପାରିଲେ; ସେ ଯଦି ବଞ୍ଚିରହିଥାନ୍ତେ ତେବେ ଜଣେ ପ୍ରସିଦ୍ଧ ଔପନ୍ୟାସିକା ଭାବେ ଖ୍ୟାତି ଅର୍ଜନ କରିବା ସଙ୍ଗେ ସଙ୍ଗେ ଓଡ଼ିଆ ସାହିତ୍ୟର ଗନ୍ତାଘର ଋଦ୍ଧିମନ୍ତ ହୋଇଥାନ୍ତା, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ଫକୀରମୋହନ ସେନାପତି ଓଡ଼ିଆ ଉପନ୍ୟାସ ସାହିତ୍ୟର ଭିତ୍ତି ସ୍ଥାପନ କରିଥିଲେ । ସେହି ଭିତ୍ତି ଉପରେ ନନ୍ଦକିଶୋର ବଳ, ଚିନ୍ତାମଣି ମହାନ୍ତି, ଦୟାନିଧି ମିଶ୍ର, ବୈଷ୍ଣବଚରଣ ଓ ଉପେନ୍ଦ୍ର କିଶୋର ପ୍ରମୁଖ ଯେଉଁ ଉପନ୍ୟାସ ଧାରା ପ୍ରଚଳନ କଲେ, ସେଥିରେ କୁନ୍ତଳାକୁମାରୀ ଏକ ବ୍ୟତିକ୍ରମ । ଆଧୁନିକ ଉପନ୍ୟାସର କଳା ଦୃଷ୍ଟିରୁ କୁନ୍ତଳାକୁମାରୀଙ୍କ ଉପନ୍ୟାସ ଉଚ୍ଚକୋଟୀର ନୁହେଁ । ଉପନ୍ୟାସ ମଧ୍ୟରେ ବିସ୍ତୃତ ଜୀବନ ପ୍ରବାହ ଥିଲେ ମଧ୍ୟ ତାର ଜଟିଳ ସ୍ପନ୍ଦନ ପରିଲକ୍ଷିତ ହୁଏ ନାହିଁ । କାହାଣୀ କଥନଭଙ୍ଗୀରେ ଅଛି ସିଧାସଳଖ ବର୍ଣ୍ଣନା । ତଥାପି କୁନ୍ତଳାକୁମାରୀଙ୍କ ଉପନ୍ୟାସ ସେହି ସମୟର ଚିତ୍ତବୃତ୍ତିର ଯେ ସଫଳ ପ୍ରଦର୍ଶନ, ଏ କଥାକୁ ଅସ୍ୱୀକାର କରିହୁଏ ନାହିଁ । ତାଙ୍କର ସମଗ୍ର ଉପନ୍ୟାସ ସୃଷ୍ଟି ମଧ୍ୟରେ ଜାତୀୟ ଜୀବନର ମୃଦୁ ମନ୍ଦ ଶବ୍ଦ ରହିଛି, ଉପଭୋଗୀ ଗୋଷ୍ଠୀଙ୍କର ବିଳାସବୋଧ ରହିଛି, ସାଧାରଣ ଗ୍ରାମ୍ୟଜୀବନର ବାସ୍ତବ ବର୍ଣ୍ଣନା ରହିଛି; ସର୍ବୋପରି ଅଛି ମୁଗ୍ଧ ମାନବିକତା । ସଂସ୍କାରବୋଧ ମଧ୍ୟ ଦେଇ ମାନବ ବନ୍ଦନା ଯେପରି ମୁଖ୍ୟ ଅନ୍ତଃସ୍ରୋତ ଭାବରେ ତାଙ୍କର ଉପନ୍ୟାସକୁ ଏକ ସ୍ୱତନ୍ତ୍ର ମର୍ଯ୍ୟାଦା ପ୍ରଦାନ କରିଛି ।